# ସାମାନ୍ୟ ଅସାମାନ୍ୟ

(କବିତା ସଂକଳନ)


## ବ୍ରଜନାଥ ରଥ

ସୁନହଟ - ବାଲେଶ୍ୱର - ୨



*ପ୍ରକାଶକ :* କାଳୀପଦ ପଣ୍ଡା

**ସୁବର୍ଣ୍ଣଶ୍ରୀ ପ୍ରକାଶିନୀ, ବାଲେଶ୍ୱର**

ଘର ନଂ-୪୫, ସେନ୍ ବିଲ୍‌ଡିଙ୍ଗ, ମୋତିଗଞ୍ଜ,

ବାଲେଶ୍ୱର-୭୫୬୦୦୩

ମୋ: ୯୪୩୭୦୮୯୨୪୧

*ପ୍ରଚ୍ଛଦ :* ବିଜୟ କୁମାର ପ୍ରଧାନ

*ମୁଦ୍ରଣ :* ଜଗନ୍ନାଥ ପ୍ରୋସେସ୍ ପ୍ରା.ଲିଃ., ଡଗରପଡ଼ା, କଟକ

*ଅକ୍ଷର ସଜ୍ଜା :* ମୁକ୍ତି କ୍ରିଏସନ୍, ମୋତିଗଞ୍ଜ, ବାଲେଶ୍ୱର

ପ୍ରଥମ ପ୍ରକାଶ : ଡିସେମ୍ବର ୨୦୦୭

ମୂଲ୍ୟ : ଟ.୫୦/- (ପଚାଶ ଟଙ୍କା ମାତ୍ର)


---

# SAMANYA ASAMANYA

(Collection of poems)

by


**BRAJANATH RATH**



**Publisher : Kalipada Panda**

**SUBARNASHREE PRAKASHINI**

House No. 45, Sen Building, Motiganj, Balasore-3,

Mob : 9437089241

**Cover Design :** Bijay Kumar Pradhan

**Printed at:** Jagannath Process Pvt. Ltd.

Dagarapara, Cuttack

**D.T.P. :** Mukti Creation, Motiganj, Balasore-3

**First Edition** : December 2007

**Price : Rs. 50 /-** ( Rupees Fifty Only)

# ଉତ୍ସର୍ଗ

ଯାହାଙ୍କ
ଅଦୃଶ୍ୟ ଆଶୀର୍ବାଦ
ମୋର
ସାମାନ୍ୟ ସାରସ୍ୱତ ସାଧନାକୁ
ଅସାମାନ୍ୟ ରୂପ ଦେବାକୁ ପ୍ରେରଣା ଦେଇଛି
ସେହି
ପରଲୋକ ଗତ
ପରମ ପିତୃ-ପୁରୁଷଙ୍କ
ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ..

# କବି ବ୍ରଜନାଥ ରଥଙ୍କ ସୃଷ୍ଟି ସମ୍ଭାର

## କାବ୍ୟକୃତି :

ମରୁଗୋଲାପ - (୧୯୬୦)
ନିଜସ୍ୱ ସଂଳାପ - (୧୯୬୯)
ମରୁଗୋଲାପ ଓ ଅନ୍ୟାନ୍ୟ କବିତା - (୧୯୭୨)
ନିଃଶବ୍ଦ ପ୍ରତିବାଦ - (୧୯୭୭)
ସଭ୍ୟତାର ମୁହଁ - (୧୯୭୯)
ମନର ମାନଚିତ୍ର - (୧୯୮୩) (ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ)
ହେ ମହାଜୀବନ ! - (୧୯୯୧)
ଲଘୁଶତକ - (୧୯୯୩) (ବ୍ୟଙ୍ଗକବିତା ସଂକଳନ)
ହେ ମୋର ସ୍ୱଦେଶ - (୧୯୯୭) (ସ୍ୱଦେଶ ସଂପର୍କୀୟ କବିତା ସଂକଳନ)
ସମୟର ଶବ୍ଦଲିପି - (୨୦୦୭)
ସ୍ୱନିର୍ବାଚିତ କବିତା - (୨୦୦୨)
ଗଡ଼ିଗଡ଼ି ଗଲି ବଲ୍ (୨୦୦୧) (ଶିଶୁ କବିତା ସଂକଳନ)
କାଁଚକା ଘର - (୧୯୭୭) (ହିନ୍ଦୀରେ ଅନୂଦିତ କବିତା ସଂକଳନ)
ହେ ମହାଜୀବନ - (୨୦୦୩) (ବଂଗଳାରେ ଅନୂଦିତ କବିତା ସଂକଳନ)

## ଅନୁବାଦ ଗ୍ରନ୍ଥ :

ତସଲିମାଙ୍କ ଶ୍ରେଷ୍ଠ କବିତା (୧୯୯୪)
(ବାଂଲାଦେଶର ବିତର୍କିତ ଲେଖିକା ତସଲିମାଙ୍କ କବିତା ସଂକଳନ)
ଦୁଃଖିନୀ ଝିଅର ଗୀତ (୧୯୯୬)
(ବାଂଲାଦେଶର ବିତର୍କିତ ଲେଖିକା ତସଲିମାଙ୍କ କବିତା ସଂକଳନ)
ନିର୍ବାଚିତ କଲାମ (୧୯୯୫)
(ତସଲିମାଙ୍କ ନିର୍ବାଚିତ ସ୍ତମ୍ଭ ରଚନା)
ମୋ' ପିଲାଦିନ (୨୦୦୦)
(ତସଲିମାଙ୍କ ନାସରିନ୍ ଆତ୍ମଜୀବନୀ)
ଜେଲ୍ ପତ୍ରାବଳୀ ଓ ଅନ୍ୟାନ୍ୟ ରଚନା (୨୦୦୪)
ଅନ୍ନଦା ମଙ୍ଗଳ (୨୦୦୭)
(ମଧ୍ୟଯୁଗର ବିଖ୍ୟାତ ବଂଗୀୟ କବି ଭାରତଚନ୍ଦ୍ର ରାୟ ଗୁଣାକରଙ୍କ ଶ୍ରେଷ୍ଠ କାବ୍ୟ 'ଅନ୍ନଦା ମଂଗଳ'ର ନିର୍ବାଚିତ ଗଦ୍ୟାନୁବାଦ)

# କବିର ମର୍ମକଥା

ମନେପଡୁଛି ବହୁବର୍ଷ ତଳେ 'Poetry Review' ପତ୍ରିକାରୁ 'Knot' ଶୀର୍ଷକ ସୁନ୍ଦର କବିତାଟିଏ ପଢ଼ିଥିଲି । ପଢ଼ିବାପରେ ଏତେ ମୁଗ୍ଧ ହୋଇ ଯାଇଥିଲି ଯେ ସେ କବିତାଟି ମୋ ମନରେ ଗଭୀର ରେଖାପାତ କରିଥିଲା । ପ୍ରକୃତରେ ଭଲ କବିତାଟିଏ ଜଣେ ପାଠକକୁ କେତେ ପ୍ରଭାବିତ କରିପାରେ ମୁଁ ସେଇଠୁ ଜାଣିଲି । 'Knot', ଯାହାର ଓଡ଼ିଆ ପ୍ରତିରୂପ ହେଉଛି 'ଗଣ୍ଠି' । ଗୋଟିଏ 'ଗଣ୍ଠି'କୁ ନେଇ ଯେ ଏକ କବିତା ଲେଖାଯାଇପାରେ, ଏହା ମୋତେ ଆଶ୍ଚର୍ଯ୍ୟ କରିଥିଲା । ଭକ୍ତକବି ମଧୁସୂଦନ 'ପଦ୍ମ'କୁ ନେଇ, ଉତ୍କଳଭାରତୀ କୁନ୍ତଳାକୁମାରୀ 'ଶେଫାଳୀ'କୁ ନେଇ କିମ୍ବା ବିଖ୍ୟାତ ଇଂରାଜୀ କବି ୱାର୍ଡ଼ସୱାର୍ଥ 'ଡେଫୋଡିଲ'କୁ ନେଇ ସିନା ସେମାନଙ୍କ ବାଗରେ ଅପୂର୍ବ ଭାବୋଦ୍ଦୀପକ କବିତା ଲେଖିଯାଇଛନ୍ତି ଏବଂ ଆଜି ପର୍ଯ୍ୟନ୍ତ ଲକ୍ଷ ଲକ୍ଷ ପାଠକଙ୍କୁ ମୁଗ୍ଧ-ଚକିତ କରି ପାରିଛନ୍ତି, କିନ୍ତୁ ଗୋଟିଏ ନିର୍ଜୀବ ଓ ଅତି ତୁଚ୍ଛ 'ଗଣ୍ଠି'କୁ ଉପଜୀବ୍ୟ କରି ଯେ ଏହାକୁ ପୁଣି କବିତା ଭଳି ସାହିତ୍ୟର ଅତି ସୂକ୍ଷ୍ମକଳା ଭିତରେ ରୂପଦେଇ ହେବ, ଏହା ମୋ କଳ୍ପନା ବାହାରେ ଥିଲା । ଆମକୁ ପୂର୍ବରୁ ଧାରଣା ଦିଆ ଯାଇଥିଲା ଯେ, ପ୍ରେମ, ପ୍ରକୃତି, ଈଶ୍ୱର ଇତ୍ୟାଦି ଲୋଭନୀୟ, ଶୋଭନୀୟ, ରମଣୀୟ ଓ ମହନୀୟ ବିଷୟ ବସ୍ତୁହିଁ କେବଳ କବିତାର ଅଙ୍ଗୀଭୂତ ହେବାର ଯୋଗ୍ୟ ଏବଂ ପ୍ରାୟ ଏହି ଧାରଣାର ବଶବର୍ତ୍ତୀ ହୋଇ ଆମ ପୂର୍ବସୂରୀମାନେହିଁ ମୁଖ୍ୟତଃ କାବ୍ୟ-କବିତା ରଚନା କରୁଥିଲେ । ଏହାହିଁ ଥିଲା ଆମର କାବ୍ୟପରଂପରା । କିନ୍ତୁ ବିଂଶ ଶତାବ୍ଦୀର ଧ୍ୟାନଧାରଣା ଏହାକୁ ନସ୍ୟାତ୍ କରି ଦେଖାଇ ଦେଇଛି ଯେ କୌଣସି ତୁଚ୍ଛ ବସ୍ତୁ ବା ବିଷୟକୁ ଅବଲମ୍ବନ କରି ମଧ୍ୟ କାବ୍ୟ-କବିତା ସୃଷ୍ଟି କରାଯାଇପାରେ । ଯାହାର ପ୍ରମାଣ 'Knot' ବା 'ଗଣ୍ଠି' କବିତା ।

ଏହାପରେ ମୁଁ ପରୀକ୍ଷା ସ୍ୱରୂପ ଗତ କିଛିବର୍ଷ ଧରି ସଂସାରର ଯାହା ତୁଚ୍ଛ, ନଗଣ୍ୟ ଓ ସାମାନ୍ୟ ଏଭଳି ବିଷୟବସ୍ତୁ ସବୁକୁ ନେଇ କିଛି କବିତା ଲେଖିଲି । ବିଭିନ୍ନ ପତ୍ର-ପତ୍ରିକାରେ ଏହା ପ୍ରକାଶ ପାଇଲା ପରେ କିଛି ରସିକ ପାଠକ ସେମାନଙ୍କ ପ୍ରତିକ୍ରିୟା ଜଣାଇଲେ । ମୁଁ ଏଥିରେ ଯଥେଷ୍ଟ ଉତ୍ସାହିତ ହେଲି । ସେହି ପାଠକମାନଙ୍କ ସକାରାତ୍ମକ ମତାମତ ମୋତେ ଏଭଳି ଏକ କବିତା ସଂକଳନ ପ୍ରକାଶ ପାଇଁ ଯଥେଷ୍ଟ ପ୍ରେରଣା ଦେଇଛି ।

ମୁଁ ଏହାର ନାମକରଣ କରିଛି 'ସାମାନ୍ୟ ଅସାମାନ୍ୟ' କାରଣ ଆପାତଦୃଷ୍ଟିରେ ଯାହା ଖୁବ୍ ସାମାନ୍ୟ ଏବଂ ଅପାଙ୍କ୍ତେୟ, ତହିଁରେ ମୁଁ କିଛି ବିଶେଷତ୍ୱ ବା ଅସାମାନ୍ୟତ୍ୱ ଖୋଜିପାଇଛି । ତହିଁରେ ଅସାମାନ୍ୟତ୍ୱ ଆରୋପ ମଧ୍ୟ କରିଛି । ସେଥିପାଇଁ ଏହି ସଂକଳନଭୁକ୍ତ ପ୍ରତ୍ୟେକ କବିତାର ମୂଳବସ୍ତୁ - ତାହା 'ଇଟା' ହେଉ ବା 'କାଠଗଡ଼' ହେଉ, 'ପାରା' ହେଉ ବା 'ଘୁଷୁରି' ହେଉ, 'ପୋଲ' ହେଉ ବା 'ଗାଁ ପୋଖରି' ହେଉ, କିମ୍ବା 'ଏକ ନିର୍ଜନ ଘର' ହେଉ ବା 'ନାମଫଳକ' ହେଉ, ସବୁଥିରେ ଏକ ଦାର୍ଶନିକ ସୁଲଭ କବିଦୃଷ୍ଟି ନିକ୍ଷିପ୍ତ ହୋଇଛି । ପ୍ରକାଶଶୈଳୀ ମୁଖ୍ୟତଃ କଥନଧର୍ମୀ ବା ଗଦ୍ୟଧର୍ମୀ ଏବଂ ପ୍ରକାଶଭଂଗୀ ସହଜ ଓ ସରଳ । ଗ୍ରନ୍ଥାକାରରେ ପ୍ରକାଶ ପାଇବା ପରେ ଏହା ମୋର ପ୍ରିୟ ପାଠକ-ପାଠିକା ମାନଙ୍କୁ ଏକ ନୂଆ କାବ୍ୟରୁଚିର ସ୍ପର୍ଶ ଦେବ ବୋଲି ଆଶା ଓ ବିଶ୍ୱାସ ।

ଏହାକୁ ପ୍ରକାଶ କରିବା ପାଇଁ 'ସୁବର୍ଣ୍ଣଶ୍ରୀ ପ୍ରକାଶିନୀ'ର ପ୍ରତିଷ୍ଠାତା ତଥା ମୋର ପରମ ସ୍ନେହାସ୍ପଦ ଶ୍ରୀମାନ୍ କାଳୀପଦ ପଣ୍ଡା ଅତ୍ୟନ୍ତ ଆଗ୍ରହୀ ହୋଇଥିବାରୁ ତାଙ୍କୁ ଆନ୍ତରିକ ଧନ୍ୟବାଦ ।

**ସୁନହଟ, ବାଲେଶ୍ୱର-୨**
**୨୫ ଡିସେମ୍ବର - ୨୦୦୭**

# • କବିତା କ୍ରମ •

# ଇଟା

ଚାହୁଁଚାହୁଁ
ଧୂସର ଓ କାଦୁଆ ଦେହଟା ତୁମର
ପୋଡ଼ିପୋଡ଼ି ଅଙ୍ଗାରତ ହେଲାନାହିଁ କାହିଁ ?
ଅତି ଅଦ୍ଭୁତ ଭାବରେ
ପାଲଟିଗଲା ଲାଲ,
ଗୋଧୂଳିର ଆରକ୍ତ ଆକାଶ ଭଳି ଲାଲ ॥

ଦହନର ସକଳ ଜ୍ୱାଳାକୁ
ଗୋଟିଏ ମାତ୍ର ଫୁତ୍କାରରେ ଉଡ଼ାଇ ଦେଇ
ଚହଟି ଉଠିବାର ଏ ଅପୂର୍ବ କଳା
କେଉଁଠୁ ଶିଖିଲ କେଜାଣି,
ସାରା ଦେହରେ ତୁମର
ସତେ ଯେମିତି ଲେପିହୋଇଗଲା
ରୌଦ୍ରସ୍ନାତ କୃଷ୍ଣଚୂଡ଼ାରର
ଅପୂର୍ବ ଅଙ୍ଗରାଗ ॥

ପାଖକୁପାଖ ଖଞ୍ଜାହୋଇ
ଖୁନ୍ଦି ରହିବାର
ଅତୁଳ ଆଗ୍ରହରେ
ତୁମେତ ଉତ୍‌ଫୁଲ୍ଲ ଚିରକାଳ ।

ପଣସକୋଷା ଭଳି
ଜାକିଜୁକି ହୋଇ
ପରସ୍ପରକୁ ସ୍ନେହର ଅଠାରେ ଜଡ଼ାଇ ଧରି
ବଞ୍ଚିବାରେ ଯେ କି ଆନନ୍ଦ
ତାହା କେବଳ ତୁମେଇ ଜାଣିଛ ॥

ନିପଟ ଏକୁଟିଆପଣକୁ
କେଉଁ ଏକ ନିରୋଳା ନଈକୂଳର
ଅପନ୍ତରା ଉଦାସ ମାଟିରେ
ସାରାଜୀବନ ପାଇଁ ସଅଁପିଦେଇ
ତୁମେ ତ ଦିନେ ଚାଲି ଆସିଲ
ଟିକିଏ ହେଲେ ପଛକୁ ନଚାହିଁ,
ଆଉ -
କେଉଁ ଏକ ଅଦ୍ଭୁତ ଇଚ୍ଛାର ଅଠାକାଠିରେ
ଲାଖିଯାଇ ରହିଗଲ ଯେ ରହିଗଲ
ନିବିଡ଼ ଭାବରେ ଯୋଡ଼ିଯାଡ଼ି ହୋଇ ।

ପରସ୍ପରର ଛାତିରେ ଛାତିକୁ ଜଡ଼ାଇ
ରହିଗଲ ଯେ ରହିଗଲ
ଘନିଷ୍ଠ ଆଲିଙ୍ଗନର ଅତୁଟ ମୁଦ୍ରାରେ,
ଚହଟ ଚିକ୍‌କଣ ପଲସ୍ତରାର
ପ୍ରେମିଳ ବନ୍ଧନ ଭିତରେ ॥

କାହିଁ ? ଟିକିଏ ହେଲେତ କାହିଁ-
ଛାଡ଼ବାଡ଼ ନାହିଁ ?
ନାହିଁ ତୁମର ନିଃସଙ୍ଗତାର ଭୟ;
ଖାଲି ପରସ୍ପର ସହ ଜଡ଼ିଯିବା

ଆଉ ପରସ୍ପର ସହ ଯୋଡ଼ିଯିବା ହିଁ ଯେମିତି
ତୁମର ଏକମାତ୍ର ଅଭିଳାଷ,
ଜୀବନର ଏକମାତ୍ର ବର୍ଣ୍ଣିଳ ବିଳାସ ॥

ଅଥଚ, ତୁମେବା ବୁଝିବ କେମିତି
ନିଃସଙ୍ଗତାର ନିର୍ମମ କାରୁଣ୍ୟ ଭିତରେ
ଜଡ଼ସଡ଼ ହୋଇ
ଆଉଟୁ ପାଉଟୁ ହେଉଥିବା
ଏ ସଂଭ୍ରାନ୍ତ ଓ ଅଭିଜାତ ମଣିଷର ଦୁଃଖ ?
ଯାହାର ଦୁଃଖହିଁ ଏକ ନିଃସଙ୍ଗ ବିଳାସ
ଓ ନିଃସଙ୍ଗତାହିଁ ଏକ ଦୁଃଖଦ ଆଭିଜାତ୍ୟ ॥

ଇଟା-କଂକ୍ରିଟର ସ୍ୱର୍ଗ ଭିତରେ ରହି ବି
ସେ କଣ ଦେଖିପାରୁଛି
ତୁମର ଯୋଡ଼ିଯାଡ଼ି ହୋଇ
ନିବିଡ଼ ଆଲିଙ୍ଗନରେ ଠିଆହେବାର
ଅଭିନ୍ନ ଓ ଅପରୂପ ଭଂଗୀ ?
ନା ବୁଝିପାରୁଛି
ତୁମର ଭିଡ଼ାଭିଡ଼ି ହୋଇ ଜଡ଼ିଯିବାର
ଅପୂର୍ବ ଛନ୍ଦର ରହସ୍ୟ ?

ନିଃସଙ୍ଗତାର ମଧୁଶାଳାରେ
ସେ ଯେମିତି ଆଜି ଜଣେ
ମଧୁଲୁବ୍ଧ ଉଦ୍‌ଭ୍ରାନ୍ତ ଅତିଥି,
ଅବା କେଉଁ ଅପେରା ପାର୍ଟିର
ଜଣେ ଉନ୍ମତ୍ତ ଓ ଅସହାୟ
ବିକଳ ବୟସ୍ୟ ॥

●

# ପାରା

ତୁମକୁ ରାତି ପାହିଲା କେଉଁଠି ?
ସକାଳୁ ସକାଳୁ କ'ଣ ଖୁଣ୍ଟୁଚ ପାରାମାନେ ?
ପୋକଜୋକ ନା ଆଉ କିଛି ?
ପୋକଜୋକ ଛଡ଼ା
ଆଉ ବା କ'ଣ ପାଇବ ତୁମେ ଯେ ଖାଇବ ?
ତୁମର କ'ଣ ଆମ ଭଳି
ଏତେ ଚତୁର ବୁଦ୍ଧି ଅଛି ଯେ
ଠାକୁର ଖାଇ ଖଟୁଲି ବି ଖାଇଦେବ ? ?

ତୁମେ ତ ଦେଉଳ-ଚୂଳରେ ରହିବା ଜୀବ,
ଘୁମୁରିଘୁମୁରି ସାରା ଜୀବନ ସରିଯିବ
ହେଲେ, ଠାକୁରଙ୍କ ଦେଖା ପାଇପାରିବନି;
ପାଖରେ ରହି ବି
ଠାକୁରଙ୍କ ସହ
ତୁମେ ଭାବ ଜମେଇ ପାରିବନି;
କାରଣ, ତାଙ୍କୁ ତୁମେ ଦେଇ ପାରିବନି
କିଛି ହିଁ ପ୍ରଣାମୀ;
ସେ ଗହନ ବିଦ୍ୟା କ'ଣ ତୁମକୁ ମାଲୁମ ?
(ନିର୍ବୋଧ କାହାଁକା ! !)

ଆମେ କିନ୍ତୁ ତୁମ୍ଠାରୁ ଅନେକ ଚତୁର,
ଦେଉଳଠୁଁ ଦୂରରେ ଥାଇ ବି
ବେଶ୍ ଭାବ ଜମେଇ ପାରୁଁ
ଠାକୁରଙ୍କ ସହ ।
ମିଳାଇପାରୁଁ ତାଙ୍କ ସଙ୍ଗେ
ବନ୍ଧୁତାର ହାତ ।
କାରଣ -
ଚୋଖାଚାଖୁଣିଆ ଠାକୁର
ଠିକ୍ ବୁଝନ୍ତି
ଦବା-ନବାର ଗୋପନ ଅର୍ଥ,
ଏବଂ ତା'ର କରାମତି
ଓ ଅସଲ ମହତ୍ତ୍ୱ ।

ସେ ବିଦ୍ୟାରେ ଆମକୁ ବଳିବ ବା କିଏ ?
କାମ ଆଦାୟ କରିବ ତ
ବେଳ-କାଳ ଜାଣି
ଠାକୁରଙ୍କୁର ଦିଅ କିଛି ଭୋଗ ଓ ପ୍ରଣାମୀ;
ତା'ପରେ -
ମନଇଚ୍ଛା ଯେତେ ପାର ସେତେ
ତାଙ୍କଠୁଁ ଆଦାୟ କର
କଡ଼ା - ଗଣ୍ଡା - କ୍ରାନ୍ତିର ସହିତେ॥

ପାରାମାନେ !
ବଡ଼ି ସକାଳୁ ନିଦରୁ ଉଠି
ଆଖି ମଳିମଳି
ତୁମେତ ସିଧା ଉଡ଼ିଆସିଛ ଦେଉଳ ଚୂଳରୁ ।

ଏଣେତେଣେ କୁଆଡ଼କୁ
ଟିକିଏ ନଚାହିଁ
ଏକ ଧ୍ୟାନ, ଏକ ଲୟରେ
ଖୁଣ୍ଟି ଚାଲିଛ ଯେତେ ପୋକଜୋକ;
ଆଚ୍ଛା, କହିଲ ଦେଖି
ତୁମର କ'ଣ ଆମଠାରୁ
ଏତେ ବେଶି ଭୋକ ?
ପେଟ ପୂରିଲେ ତ
ତୁମର ନଥାଏ ଆଉ
କିଛି ଚିନ୍ତା ଅବା ଦକ;
ଖାଲି ଆନନ୍ଦରେ ଘୂରିଘୂରି
ଆକାଶରେ ଉଡ଼ିବୁଲ
ଶୂନ୍ୟତାକୁ ଆଲିଙ୍ଗନ କରି ॥

କିନ୍ତୁ, ଆମ ପେଟ
କେବେ ବି ପୂରେନା,
ସବୁବେଳେ ଭୋକ ଖାଲି ଭୋକ,
ଅସରା ଭୋକକୁ ନେଇ ବଞ୍ଚିବା କେବଳ
ଆମ ଏଇ ଭୋକିଲା ଜୀବନର
ଏକମାତ୍ର ସୁଖ !

ଶୂନ୍ୟତାକୁ ଆଲିଙ୍ଗନ କରିବୁଁ କିପରି ?
ଆମେ ତ ପୂର୍ଣ୍ଣତାର ଭୋକିଲା ଭିକାରି !
ଅନ୍ୟଠୁଁ ଓଟାରି ଆଣି ସବୁକିଛି
ନିଜ ଘରେ ଭରିବା ହିଁ
ଆମର ତ ଏକମାତ୍ର କାମ;

ସେଥିପାଇଁ ଦିନ ରାତି
ଆମେ କରୁ ଅବିରାମ ବୁଦ୍ଧିର ବ୍ୟାୟାମ;
ଆପଣାର ବିବେକକୁ ପୁଣି
ପଣ୍ୟ ଭଳି କରୁଁ ନିତି ବଜାରେ ନିଲାମ ॥

ପାରାମାନେ !
ତୁମେ ଥାଅ ତୁମ ବାଟେ,
ଖାଉଥାଅ ସେଇ ପୋକଜୋକ;
ଆମେ କିନ୍ତୁ ଠିକ୍ ଅଛୁଁ
ଆମ ନିଜ ବାଟେ,
ଆମର ନିହାତି ଲୋଡା
ଜିଇବାକୁ ଏଇ ପୃଥିବୀରେ
କେବେ ବି ମରୁନଥିବା
ଖାଲି ଏକ ଆଭିଜାତ ଭୋକ ।

•

# କାଠଗଡ଼

ଜିଇଥିଲେ ଗଛ
ମଲେ କାଠଗଡ଼ ।
ଜିଇଥିଲେ ମଣିଷ
ମଲେ ମୁର୍ଦ୍ଦାର ।

ହଁ ହଁ,
ଆମେ ସେଇ କାଠଗଡ଼
ମଲାଗଛ,
ଲଦାଲଦି ହୋଇ
ଗଦା ହୋଇଛୁଁ ଏକାଠି
ନିଶୂନ ଆକାଶ ତଳେ
ଏଇ ନିପଟ ଅପନ୍ତରା ମଶାଣିରେ ।

ଆମରି ପେଟତଳେ
ମୋଡ଼ିମାଡ଼ି ହୋଇ
ଶୋଇଛି ମୁର୍ଦ୍ଦାରଟିଏ,
କେଇଘଣ୍ଟା ଆଗରୁ
ଯିଏ ଥିଲା ମଣିଷ,
ଏବେ ଶୋଇଛି ଆଖିବୁଜି
ନିଶ୍ଚିନ୍ତରେ – ମହା ଆରାମରେ
ଆଉ ଅପେକ୍ଷା କରୁଛି ଜଳିବାକୁ ।

ଆମେ ଜଳିଲେ
ସିଏ ଜଳିବ,
ଆମେ ଲିଭିଲେ
ସିଏ ଲିଭିବ;
ଲିଭିଲିଭି ପାଉଁଶ ହେଇଯିବ,
ପୁଣିଥରେ ଜଳିବାର
ପ୍ରଶ୍ନହିଁ ନଥିବ ॥

ଆମ ନାଭିନାଡ଼ ସହିତ
ଏ ଲୋକଟାର କି ସଂପର୍କ ?
ସେ କିଆଁ ଅପେକ୍ଷା କରିଚି
ଆମ ଜଳିବାକୁ ?
ଆମେ ଜଳିଲେ ନ ଜଳିଲେ
ତା'ର ବା କଣ ଯାଏଆସେ ?

ସାରା ଜୀବନ
ଜିଇଥିଲା ବେଳେ ତ
ଥରେ କାହିଁ ପଚାରିଲା ନାହିଁ –
ଭାଇ, କେମିତି ଅଛ ?
ସୁଖରେ ନା ଦୁଃଖରେ ?
ଭଲରେ ନା ମନ୍ଦରେ ?

ହାୟ,
ଆମଠୁଁ କେତେ ତଫାତ୍‌ରେ ଥିଲା
ଲୋକଟା !
ନିଜକୁ କଣ ଭାବୁଥିଲା କେଜାଣି ?

ଏବେ କିନ୍ତୁ
ଠିକ୍ ବାଗକୁ ଆସିଯାଇଛି ଲୋକଟା;
ଏଇ ଶେଷବେଳକୁ
ଆମ ସହିତ ଯୋଡ଼ି ଦେଇଛି
ଭାଇପଣ !
ଯୋଡ଼ିଦେଇଛି ନିଘଞ୍ଚ ବଂଧୁତା ।

ହଁ ଭାଇ ! ଶୋଇଥା, ଶୋଇଥା !
ନିଶ୍ଚିନ୍ତରେ ଶୋଇଥା !
ଆମକୁ ଆଦରି ନେଇଛୁ ଯେତେବେଳେ
ଆଖିବୁଜି ମହା ଆରାମରେ
ଆମ ପେଟତଳେ ଶୋଇଥା !
ଘରକଥା, ପରକଥା ଭୁଲିଯାଇ
ନିଦକରେ ଶୋଇଥା !!

ଆମେ କଣ ପରକରିଦେବୁ
ନା' ଫିଙ୍ଗିଦେବୁ ତତେ ?
ଏବେ ତ
ଆମେ କାଠଗଡ଼
ଆଉ, ତୁ ତ ମୁର୍ଦ୍ଦାର ।

ଆମକୁ ଆଉ କେହି
ଭୁଲରେବି କହିବେନି 'ଗଛ',
କହିବେନି –
ତୋତେ ବି 'ମଣିଷ' ।
ଆମେ ଏବେ
ଗୋଟିଏ ଭାଡ଼ିର ପାରା,

ଆମର ବା ଅଛି କଣ ଚାରା
ଭାଇପଣକୁ ଆଦରି
ନ ଜଳିବା ଛଡ଼ା ??

ଆଉ କିଛି କ୍ଷଣପରେ
ଆମେ ଜଳିପୋଡ଼ି
ଏକା ସାଥିରେ ପାଉଁଶ ହେଇଯିବା,
ହେଇଯିବା ମଶାଣିମାଟିରେ ଏକାକାର ।

କିନ୍ତୁ ଭରସା ଅଛି
ଦିନେ ହୁଏତ
ସେଇ ପାଉଁଶଗଦା ଉପରେ
ଝରିଯିବ
ଅଶିଣ ଆକାଶରୁ
ଅସରାଏ ବର୍ଷା,
ଆଉ ଅତି ସରାଗରେ ଅଙ୍କୁରି ଉଠିବ
ମଶାଣି-ତୁଳସୀଟିଏ,
କିମ୍ବା ହସିଉଠିବ
ସବୁଜ ଘାସର ଛୋଟ ଫୁଲଟିଏ ॥

# ଗାଁ ପୋଖରୀ

ଏଇ ଗାଁ ମୁଣ୍ଡରେ
ମୁଁ ରହିଛି କେଉଁକାଳୁ
ଅନାସକ୍ତ ଆକାଶକୁ ଅନାଇ
ଦିନର କୋଳାହଳରେ ଥରିନାହିଁ
କି, ରାତିର ନିରବତାରେ ଡରିନାହିଁ ।

ପେଟରେ ମୋର
ଅକାତକାତ ପାଣି;
ସେଇ ପାଣିରେ ପୁଣି
ମୃଦୁ ତରଙ୍ଗର
ବିଚିତ୍ର କାରୁକାର୍ଯ୍ୟର ଠାଣି ।

କୂଳରେ ଝରାପତ୍ରମାନଙ୍କର
ଗୋପନ ଚୁପ୍‌ଚାପ୍,
ଆଉ ଛାତିରେ ମୋର
ଚନ୍ଦ୍ର-ସୂର୍ଯ୍ୟଙ୍କର ଚୁପ୍‌ଚାପ୍
ଉଦାର ଆତ୍ମସମର୍ପଣ ।

ଦିନଦିନ ଧରି ପାଣିରେ ମୋର
ଗାଁ ଭୁଆସୁଣୀ ଓ ବଢ଼ିଲା ଝିଅମାନଙ୍କର
ଭୋକିଲା ଦିହର ଉତ୍ତାପ ମୁଁ ମାପିଛି;

ମାପିଛି ପୁଣି –
ଅଶକତ ବୁଢ଼ା-ବୁଢ଼ୀଙ୍କର
ଶୁଖିଲା ଚମର ଶାନ୍ତ ଶୀତଳତା;
ସବୁ ଉତ୍ତାପ ଓ ଶୀତଳତାକୁ
ମାପୁମାପୁ, ପରଖୁ ପରଖୁ
ମୁଁ ହୋଇଯାଇଛି
ଏକାନ୍ତ ନିରୁତ୍ତପ୍ତ ଓ ନିର୍ବିକାର ।

ଦିନ ଦିପହରେ
ମୋ ପାଣିରେ ପହଁରୁଥିବା
ଗାଁ-ଭେଣ୍ଡିଆମାନଙ୍କର
ସକଳ ଅତ୍ୟାଚାର ମୁଁ ସହିଚି,
ସହିଚି ପୁଣି
ଖରା-ବର୍ଷା-ଶୀତ-କାକରର
ଅସମ୍ଭବ ଅଦଉତି;

ମୁଁ ମେଣ୍ଟାଇଛି ସମସ୍ତଙ୍କର ଶୋଷ,
ବାଟଚଲା ବାଟୋଇର,
ଘରଫେରନ୍ତା ହଳିଆର
ବିଲଚରନ୍ତା ଗାଈର
ଆଉ ଉଡ଼ନ୍ତା ଚଢ଼େଇର;

କିନ୍ତୁ ମୋ ନିଜର
ଶୋଷ ବୋଲି କଣ ଅଛି
କେହି କେବେ ଜାଣିଚ
ନା ଜାଣିବାକୁ ଚାହିଁଛ ?

ନୂଆ ପୁଆଡିର ରସୁଣିଆ ଦିହର ଗନ୍ଧ,
ମାଲଭାଇଙ୍କର ମଡ଼ାପୋଡ଼ା ଦିହର ବିକଟ ବାସ୍ନା
ଅଥବା, ମଙ୍ଗୁଲା କନିଆର
ହଳଦୀବୋଳା ଚମର ମହକ,
ସବୁକୁ ମୋ ପାଣିର ପଣତରେ ପୋଛିଦେଇ
ମୁଁ କରିଦେଇଛି ପରିଷ୍କାର;
ମୋ ପାଖରେ
ତୁଠ ଅତୁଠର ବିଚାର
ଏକାନ୍ତ ଅବାନ୍ତର ।

ଗାଁଟା ଯାକର ଧୂଳିମଳିକୁ
ଆଗ୍ରହରେ ଆପଣେଇ ନେଇ
ମୁଁ ଏବେ
କ୍ରମଶଃ ପୋତିହୋଇ ଯାଉଛି ପଙ୍କରେ;
କାରଣ
ଏଇ ପଙ୍କ ହିଁ ମୋର ଚନ୍ଦନ ।

କିନ୍ତୁ ମୁଁ ଜାଣିଚି
ମୋ ଗର୍ଭର ଏଇ ସାତତାଳ ପଙ୍କରୁ
ପାଣି ଉପରକୁ ମଥା ଟେକିଛି
ଯେଉଁ ସବୁଜ-ସୁନ୍ଦର ପଦ୍ମନାଡ଼ଟିଏ
ଦେଖିବ, କାଲି ସକାଳକୁ
ତହିଁରୁ ଜନ୍ମନେବ କଢ଼ଟିଏ,
ଆଉ କଢ଼ରୁ ଫୁଟିବ
ଆଶ୍ଚର୍ଯ୍ୟ ସୁନ୍ଦର ଫୁଲଟିଏ,
ସେଇଥିପାଇଁତ କାଳକାଳ ଧରି
ମୋର ଏଇ ପଙ୍କିଳ ପ୍ରାଣର
ନୀରବ ପ୍ରତୀକ୍ଷା ! !

•

# ପୋଲ

ପୋଲକୁ ଯଦି ପଚରାଯାଏ
'ଭାଇ !
କାମ ତୁମର କଣ ?'
ତାହେଲେ –
ହୁଏତ ସିଏ ଟିକିଏ ରହିଯାଇ କହିବ –
'କାମ ଆଉ କଣ ?
ତଳକୁ ପିଠି
ଆଉ ପେଟ ଉପରକୁ କରି
ଚିତ୍ ହୋଇ ଶୋଇ
ଖରା-ବର୍ଷା, ଶୀତ–କାକର ସହିସହି
ଏଇ ବଣ-ବୁଦା ଅପନ୍ତରାରେ ପଡ଼ିରହି
ଏମିତି ବିତେଇ ଦେଉଛି ତ ଜୀବନ !

ବେଳେବେଳେ ସିନା
ଅମାନିଆ ନଈଟାର
ଫାଜିଲ ଢେଉର ଓଠ
ଚୁମି ଯାଉଛି ମୋର
ହାଡୁଆ ଦେହକୁ,
ହେଲେ –

ଛାତି ଉପରେ ଯେ
ଦିନରାତି ଶହଶହ ଓଜନିଆ ଯାନବାହନର
ନିଦାରୁଣ କଷଣ-ପେଷଣ
ନଇଁ ଦେଉଛି ଏଇ ମୋର ମେରୁହାଡ଼;
ଏଇମିତି କେତେଦିନ
ସହୁଥିବି କୁହ
ଏଇ ଭାର, ଏଇ ଅତ୍ୟାଚାର ?'

ପୋଲର କଣ କେହି ଅଛି ସାହା ?
ନା ଅଛି କେହି
ଆଶା ଓ ଭରସା ଦେଇ
ଟିକେ ବୋଲି କହିବାକୁ ଆହା ?
ସମସ୍ତେ ତ ତା' ଛାତିକୁ ମାଡ଼ି ଓ ମକଚି
ପାରି ହେଉଛନ୍ତି ନଇ,
ସେ କିନ୍ତୁ ସମସ୍ତଙ୍କ
ଶ୍ରୀପାଦର ଭାର ବହିବହି,
ଆଉ ପୁଣି ଯେତେ ଯାହା
କଷଣ ଓ ଅତ୍ୟାଚାର ସହି,
ଦେହକଷ୍ଟ ଦେହେ ମାରି
ନିରବରେ ପଡ଼ିରହି
ଆକାଶକୁ ରହିଛି ଅନାଇଁ ।

କହୁ ବା ନ କହୁ କେହି
ପଦେ ବୋଲି ଆହା,
ବାଛି ନେଇଛି ତା' ରାହା,
ସେ କିନ୍ତୁ କରିଚାଲିଛି ତା' କାମ
ଯୋଡ଼ି ଦଉଛି ଏପାଖକୁ ସେପାଖ ସହିତ,
ଅଥଚ –

ନିଜେ ଯେମିତି ପାଲଟି ଯାଇଛି
ଗୋଟେ ମୂକ ଦାରୁଭୂତ,
ଆଉ ରହିରହି ଶୁଣୁଛି କେବଳ
ତା ପାଦକୁ ଛୁଇଁଛୁଇଁ
ନୀରବରେ ବହି ଯାଉଥିବା
ଅମାନିଆ ନଈଟାର
ଗୁଣୁଗୁଣୁ ମଧୁର ସଂଗୀତ ।

ତା' ବୁକୁରେ ଅବ୍ୟକ୍ତ ବେଦନା,
ହୃଦୟରେ ଅନନ୍ତ ହାହାକାର,
କିନ୍ତୁ ତା'ର ସମର୍ପିତ ଶ୍ରାନ୍ତ ଜୀବନର
ନିରବ ଜୟଜୟକାର
ଶୁଣୁଛି ଆକାଶ
ଶୁଣୁଛି ବି ନଈ,
ପୋଲ କିନ୍ତୁ ଚିରକାଳ
ଫାଙ୍କା ହୃଦୟରେ
ମହାଶୂନ୍ୟକୁ ସେମିତି ରହିଛି ଅନାଇ ।

ସବୁ ଦୁଃଖ, ଯନ୍ତ୍ରଣା ସତ୍ତ୍ୱେ ବି
ଜୀବନେ ତା' ଏତିକି ଆନନ୍ଦ
ଆଉ କିଛି କରୁକି ନ କରୁ
ସେତ ଯୋଡ଼ିଦଉଛି
ମଣିଷକୁ ମଣିଷର ସହ;
ଏତେ କଷ୍ଟ ସହିବା ଭିତରେ
ଏଇ ଆନନ୍ଦଟିକକ ହିଁ
ଯେମିତି ତା' ସମର୍ପିତ ଶ୍ରାନ୍ତ ଜୀବନର
ଏକମାତ୍ର ବିପୁଳ ସଞ୍ଚୟ ॥

•

# କୋଥଳି

ସେ କେଉଁ କାଳର କଥା ।
ନୂଆ ନୂଆ ବାହାହୋଇ ଆସିଥିଲା ମା'
ଯାନି-ଯଉତୁକ କିଛି
ତା'ସାଥିରେ ଆଣିଥିଲା କି ନା
ଏତେଦିନ ପରେ ଆଜି
କିଏ ଅଛି, ଦେବ ତା' ହିସାବ ?
କିନ୍ତୁ ଏକ ମୂଲ୍ୟହୀନ ଅମୂଲ୍ୟ କୋଥଳି
ବାହାଘରର ଭାର ସହ
ଯାହା ଦିନେ ଆଣିଥିଲା ମାଆ
ତା ନିଜ ସାଥିରେ,
ତା'ଅନ୍ତେ ବି ବହୁଦିନ ଧରି
ରହିଥିଲା ଆମ ଘର ଅନ୍ଧାରି ଠଣାରେ ॥

ଏବେ ବି ମୋ ରହିଅଛି ମନେ
ଦେଖିଥିଲି ମୋର ପିଲାଦିନେ
ସକାଳ-ସିନାନ ସାରି ସେବା-ପୂଜା ପାଇଁ
ମା'ସେହି କୋଥଳିକୁ ଯତନରେ ମଥାରେ ଛୁଆଁଇ
ଖୋଲୁଥିଲା ଅତି ଆଦରରେ,
ଆଉ ତା'ଭିତରେ ଥିବା ସାନ ଆଇନାରେ

ଦେଖୁଥିଲା ମୁହଁ,
ସିନ୍ଦୂର ବିନ୍ଦୁଏ ନେଇ ଫଗୁଆ ଭିତରୁ
ନାଉଥିଲା କପାଳରେ କେତେ ଆଗ୍ରହରେ,
ଦାଉଦାଉ ହୋଇ ସେତେବେଳେ
ମା'ମୁହଁ ଉଠୁଥିଲା ଝଳି
ଦଶରା' ର ଦେବୀମୂର୍ତ୍ତି ଭଳି ॥

ମାହାର୍ଦ୍ଦ ଦୁଇଟି ଆଣି କୋଥଳି ଭିତରୁ
ତୁଳସୀ ଓ ଗଙ୍ଗାଜଳ ସହ
ଦେଉଥିଲା ପାଇ,
ତାହାପରେ ଭାଗବତ ପୋଥିରୁ ଅଧ୍ୟାୟେ
ପଢ଼ିସାରି ମଥାରେ ଛୁଆଇଁ
ତାକୁ ନେଇ ଆମ ଘର ଅନ୍ଧାରି ଠଣାରେ
ଦେଉଥିଲା ଥୋଇ;
ମନେ ହେଉଥିଲା ମୋର ଠିକ୍ ସେତେବେଳେ
ଏଇ ସାରା ସଂସାରର ସକଳ ସନ୍ତୋଷ
ସିନ୍ଦୂର-ଚନ୍ଦନ ଆଉ ତିଳକ-ତୁଳସୀ ହୋଇ
ସତେକି ଯାଇଛି ଲାଖି ମା'ର ମୁହଁରେ ॥

ଆଜି କିନ୍ତୁ ମା'ମୋର ନାହିଁ;
କେଉଁ କାଳୁ ଆମ ଗାଁ ମଶାଣିର ଭୂଇଁରେ
ଘାସ ହୋଇ କେତେଥର ଯିବଣି କଅଁଳେଇ।
ମନେପଡ଼େ ଆଜି ମନେପଡ଼େ,
ଗୋରାତକତକ ତା'ର ଫରସା ଗଳାରେ
ଶୋଭା ପାଉଥିଲା ଦିନେ
ଯେଉଁ ସୁନା ଚମ୍ପାକଳି, କଳରାର ମାଳ,
ମଲାପରେ ସିଏ ପୁଣି ଭଙ୍ଗାଯାଇ ଗଢ଼ାହେଲା

ବହୂପାଇଁ ନୂଆ ନୂଆ ଫେସନର ହାର;
ଆହା କି ଆନନ୍ଦ କୁହ ଦେଖିବ ବହୂର ! !

ମା'ଅନ୍ତେ କିନ୍ତୁ ତା'ର ପ୍ରିୟ କୋଥଳିଟି
ଆମରି ଗମ୍ଭୀରି ଘର ଅନ୍ଧାରି ଠଣାରେ
ଅସ୍ପୃଶ୍ୟ ଓ ପରିତ୍ୟକ୍ତ ମଳାମୂଷା ଭଳି
ସେମିତି ରହିଲା ପଡ଼ି,
ଆଉ ତା' ଦେହରେ କ୍ରମେ
ଛନ୍ଦିଗଲା ବୁଢ଼ିଆଣୀ ଜାଲ
ପରସ୍ତ ପରସ୍ତ ହୋଇ ଜମିଗଲା ଧୂଳି ॥

ଭାଗବତ ପୋଥିରେ ବି ଚରିଗଲା ଉଇ
ସତେ କି ଅନାଥ ହୋଇ ମା'ର କୋଥଳି
ଏଇ ଭବ-ସାଗରରୁ ମହା ମୁକ୍ତି ପାଇଁ
ନିରବେ ଡାକିଲା ଖାଲି ତ୍ରାହି-ତ୍ରାହି-ତ୍ରାହି ।
କିନ୍ତୁ କିଏ ଅଛି ମହାପ୍ରାଣ ?
ଏଇ ଦୀନ ଅନାଥକୁ
କରିଦେବ ସଂସାରରୁ ତ୍ରାଣ ! !

ଅବଶେଷେ ଦିନେ କିନ୍ତୁ ହୋଇ ଆଗଭର
ବାହାରିଲେ ବହୂ,
ଅଳିଆ-ଅସନା ଆଉ ଅଲୋଡ଼ା-ଅଖୋଜା
ମାନ୍ଧତା କାଳର ସେଇ ଛିଣ୍ଡା କୋଥଳିକୁ
ମଳାମୂଷାଟିଏ ଭଳି
ବାଁ-ହାତରେ ଝୁଲାଇ ଝୁଲାଇ
ଦଳୁଆ ପୋଖରୀ ଜଳେ ଦେଲେ ତ ଉଝାଇ ।

ରଙ୍ଗଛଡ଼ା, ତେଲଚିକ୍‌ଟା, ମଳିଆ, ମସିଆ,
କୋଥଳିଟି ଅସହାୟେ ବୁଡ଼ି ଯାଉଁଯାଉଁ
ପାଣିତଳୁ ଉପରକୁ ଉଠୁଥିବା ଫୋଟକା ଭିତରେ
ମୁଁ ଯେମିତି ପାରୁଥିଲି ଦେଖି
ଡହଳ-ବିକଳ୍‌ ମୁହଁ ମୋ'ରି ମାଆର;
ଆଉ ମୋତେ ଲାଗୁଥିଲା,
ଆଖିକରି ଲୁହ ଛଳଛଳ
ସତେ କି ସେ ଶେଷଥର ପାଇଁ
ମୋ ପାଖରୁ ଚାଲିଗଲା,
ହଜିଗଲା ନେଇ ତା'ର
ସବୁତକ ସ୍ମୃତିର ସମ୍ବଳ ।

•

# ମଶାରି

ସୁରକ୍ଷାର ବଳୟ ସୃଷ୍ଟିକରି
ତୁମର ଚତୁଷ୍କୋଣି ଛାଉଣି ଭିତରେ
ମୋତେ ଦେଇଛ
ନିରାପଦ ଅଭୟ ଆଶ୍ରୟ ।

ଦେଇଛ ସୁନିଦ୍ରା
ଦେଇଛ,
ତାମସୀ ନିଶୀର ପରମ ଶାନ୍ତି ।
ଆଉବି ଦେଇଛ
ରକ୍ତଶୋଷକଠୁଁ ବଞ୍ଚିବାର
ଅଖଣ୍ଡ ନିରାପତ୍ତା ।

ତୁମେ କଣ ମୋର ମାଆ ନା ଜାୟା ?
ତୁମର ନରମ ପଣତ ଘୋଡ଼ାଇ ଦେଇ
ଆବୋରି ବସିଛ ମୋର ସାରା ଦେହ
କେତେ ରାତି,
କେତେକେତେ ବିନିଦ୍ର ରାତି ।

ହଁ ମୁଁ ମାନୁଛି,
ତୁମେ ମୋତେ ଦେଇଛ ଅନେକ କିଛି;
ଦେଇଛ ସୁରକ୍ଷା
ଦେଇଛ ସୁନିଦ୍ରା
ଦେଇଛ ଶାନ୍ତି,
କିନ୍ତୁ ହରିନେଇଛ
ମୋର ପରମ ଆକାଂକ୍ଷିତ ମୁକ୍ତିର ବାସନା;
ଶୋଷଣରୁ ମୁକ୍ତି ପାଇବାକୁ ଯାଇ
ମୁଁ ଯେ ଏବେ
ତୁମ ସୁରକ୍ଷା ବଳୟ ଭିତରେ ବନ୍ଦୀ ! !

ତୁମେ କହି ପାରିବ ?
ଶାନ୍ତି ପାଇଁ ବନ୍ଧନ
ନା, ବନ୍ଧନ ମୁକ୍ତିରେ ହିଁ ଶାନ୍ତି ?
ଏ ଅସମାହିତ ପ୍ରଶ୍ନର
ତୁମେ କଣ ଦେଇପାରିବ
ସମୁଚିତ ଉତ୍ତର ? ?

•

# ଚୌକି

ଚୌକି ପଡ଼ିଥାଏ,
ପଡ଼ି ରହିଥାଏ ଫାଙ୍କା ଚୌକି,
କେହି ନା କେହି ଆସି
ପୂର୍ଣ୍ଣ କରନ୍ତି
ତା'ର ଶୂନ୍ୟ କୋଳ ।

କିନ୍ତୁ,
କେବେତ କାହିଁ
ଦିନେହେଲେ କାହାକୁ ସେ
ମନା କରିନାହିଁ
ବସିବା ପାଇଁ
ତା' କୋଳରେ;
ସମସ୍ତଙ୍କୁ କୋଳେଇ ନେବାରେ ହିଁ
ତା'ର ଅସୀମ ଆନନ୍ଦ ।

ଚୌକିର କି ପରମ ଭାଗ୍ୟ !
ନିର୍ଜୀବ ବସ୍ତୁଟିଏ ହୋଇବି
ସଜୀବ ମଣିଷମାନଙ୍କୁ
ଆଦରିନିଏ ଆପଣା କୋଳରେ,
ଏମିତି ଭାଗ୍ୟ ଆଉ କାହାର ଅଛି କୁହ ?

ସମୟ ଗଡ଼ିଯାଏ
କାଳକ୍ରମେ ଚଉକି ବି
ବୁଢ଼ା ହୋଇଯାଏ,
ଭାଙ୍ଗିଯାଏ ତା'ର
ହାତ ଆଉ ଗୋଡ଼,
ଦେହରୁ ଛାଡ଼ିଯାଏ ରଙ୍ଗ,
ହଡ଼ାବଳଦ ଭଳି
ସେ' ବି ହୋଇଥାଏ
ଏକାନ୍ତ ଅଲୋଡ଼ା ଓ ଅଖୋଜା ।

ସାରାଜୀବନ ଶହଶହ ମଣିଷକୁ
କୋଳେଇ ଆସିଥିବା ଚୌକି
ଧୂଳି-ଧୂସର ଦେହରେ
ଅନ୍ଧାରି ଘରର
କେଉଁ ଏକ ପରିତ୍ୟକ୍ତ କୋଣରେ
ପଡ଼ିରହେ
ଅତି ଦୟନୀୟ ଭାବରେ ।

ସେତେବେଳେ ବି
ତା' କୋଳ ଶୂନ୍ୟ ରହେନା,
ସେ ଅତି ବ୍ୟାକୁଳ ଭାବରେ
କୋଳେଇ ନିଏ
କୌଣସି ଜୀବନ୍ତ ମଣିଷକୁ ନୁହେଁ,
ଅନ୍ତହୀନ ଶୂନ୍ୟତାକୁ ।।

●

# ଚଷମା

ମୁଁ ଜାଣିଛି
ଅନ୍ଧକୁ ଚକ୍ଷୁଷ୍ମାନ୍ କରିବାର
ଅପୂର୍ବ ଶକ୍ତି ମୋର ନାହିଁ,
କିନ୍ତୁ କ୍ଷୀଣ ଦୃଷ୍ଟିକୁ
ବହୁଗୁଣିତ କରିବାର
ବିପୁଳ ଶକ୍ତିରେ ମୁଁ ଶକ୍ତିମାନ୍ ॥

ଆଜନ୍ମ ଅନ୍ଧକୁ
ଚକ୍ଷୁଷ୍ମାନ୍ କରିବ ବା କିଏ ?
ସେତ ଚିରକାଳ ଦୃଷ୍ଟିହୀନ, ଅନ୍ଧ;
କିଛି ନଦେଖି ପାରିବାହିଁ
ତା'ର ଚରମ ଦୁର୍ବଳତା;
ଆଉ, ଆଲୋକ ପାଖରେ ଥାଇବି
ଆଲୋକକୁ ଅସ୍ୱୀକାର କରିବାହିଁ
ତା'ର ଏକମାତ୍ର ଧର୍ମ ॥

ମୋର ବା ସେଭଳି
କୁହୁକ-ଶକ୍ତି କାହିଁ
ଯାହାକୁ ନେଇ
ଅନ୍ଧକୁ କରିବି ଚକ୍ଷୁଷ୍ମାନ୍ !
ଭରିଦେବି ଦିବ୍ୟଦୃଷ୍ଟି ?

ଅନ୍ଧଙ୍କ ରାଜ୍ୟରେ
ମୋର ବା କି ପ୍ରୟୋଜନ ?
ମୁଁ କଣ କେବେ କରିପାରିବି
ସେମାନଙ୍କ ତାମସୀ ଦୃଷ୍ଟିରେ
ଅସରନ୍ତି ଆଲୋକ-ବୃଷ୍ଟି ??

ମୁଁ ଏତିକି କେବଳ କରିପାରେ
ବାଟ ଖୋଜି ପାଉନଥିବା
ବାଟୋଇଟିର କ୍ଷୀଣ ଆଖିରେ
କ୍ଷଣକ ପାଇଁ ଭରିଦେଇପାରେ
ଖୋଜି ପାଇବାର ଦୃଷ୍ଟିଶକ୍ତି,
ଏଇଥିରେ ହିଁ ମୋର ପରମ ତୃପ୍ତି
ଏଇଥିରେହିଁ ମୋ' ଜୀବନର
ଚରମ ମୁକ୍ତି ॥



# କୋଟ

ବାପା, ତୁମର ମନେଅଛି ?
ପିଲାବେଳେ
ମୋ ପାଇଁ ତୁମେ
କଟେଇ ଦେଇଥିଲ କୋଟଟିଏ,
ସେ କେଉଁକାଳର କଥା;
ଶୀତଦିନେ
ଯାହାକୁ ପିନ୍ଧି
ବହିପତ୍ର ଧରି
ତୁମ ପଛେପଛେ
ମୁଁ ଧାଉଁଥିଲି ସ୍କୁଲକୁ ।।

ଶ୍ରୀପଞ୍ଚମୀ ଦିନ
ସେହି କୋଟ ପିନ୍ଧି
ସାଙ୍ଗସାଥିଙ୍କ ଗହଣରେ
ତୁମ ପାଖରେ ବସି
ଉଠେଇଥିବା ଫଟୋଟି
ଅନେକଦିନ ପରେ ବି
ସ୍ମୃତିର ସୁଗନ୍ଧ ଭିତରେ
ଆଜି ମହକି ଉଠୁଛି ।।

କେଉଁକାଳୁ ତୁମେ
ନୀଳ ଗଗନର ତାରା ହୋଇଗଲଣି,
ଆଉ ମୁଁ
ତୁମ ' ଏକୋଇରବଲା ବିଶିକେଶନ'
ଗୋଟିଏ ଅସ୍ଥିର ବିଜୁଳିପୋକ ଭଳି
ଏଇ ନିଘଞ୍ଚ ଅନ୍ଧାରରେ
ଘୂରୁଛି, ଖାଲି ଘୂରୁଛି ॥

ତୁମେ ଚାଲିଗଲା ପରେ
ତୁମ ଦୀର୍ଘ ଶିକ୍ଷକ-ଜୀବନର
ସେହି ଗଳାବନ୍ଧ କୋଟ ସହିତ
ମୋ ପିଲାବେଳର ସେହି କୋଟଟି
ଗନ୍ଧକର୍ପୂରର ବାସ୍ନା ଭିତରେ
ନିବୁଜ ଟ୍ରଙ୍କର ପିରାମିଡ଼ କୋଳରେ
ମମି ପାଲଟିଯାଇଛି କେଉଁକାଳୁ ॥

ହଠାତ୍ ସେଦିନ
ଚଗଲା ନାତିଟୋକାଟା
ସ୍କୁଲଡ୍ରାମାରେ ଅଭିନୟ ପାଇଁ
ମାଗିନେଲା ସେହି ପୁରୁଣା କୋଟଟି,
ଆଉ ଯେତେବେଳେ
ହିରୋ ବେଶରେ ବାହାରି ଆସିଲା
ସେହି କୋଟ ପିନ୍ଧି
ନିଶ ମୋଡ଼ିମୋଡ଼ି
ମନେହେଲା -
ସତେ ଯେମିତି କ୍ଷଣକ ପାଇଁ

ସମୟ ସ୍ଥିର ହୋଇଗଲା,
କଡ଼ ଲେଉଟାଇଲା ଅତୀତ
ଏକ ଅଥର୍ବ ଅଜଗର ଭଳି ॥

ଦେଖିଲି -
ଦଶବର୍ଷର ପିଲାଟିଏ ହୋଇ
ମୁଁ ପଶିଯାଇଛି
ସେହି ହଜିଗଲା ଅତୀତର
ପୁରୁଣା କୋଟ ଭିତରେ,
ଆଉ ତୁମେ ବସିଚ ମୋ ପାଖରେ
ଏକ ଆଶ୍ଚର୍ଯ୍ୟ ଦେବଦୂତ ଭଳି ॥



# ବୁଢ଼ିଆଣୀ ଜାଲ

ବୁଢ଼ିଆଣୀ କୁଆଡ଼େ ନଚାହିଁ
ବୁଣି ଚାଲିଛି ତା'ର ଜାଲ
ସୂକ୍ଷ୍ମାତିସୂକ୍ଷ୍ମ ଜାଲ,
ସେ କେଉଁଠୁ ଶିଖିଲା କେଜାଣି
ଏହି ଜାଲ ବୁଣିବାର ଅପୂର୍ବ କୌଶଳ ! !

ଜାଲ ବୁଣିବୁଣି ଥକି ପଡ଼ିଲେ
ସେ ଶୋଇପଡ଼ିବ
ସେଇ ଜାଲ ଉପରେ
ମହା ଆନନ୍ଦରେ;
ସେତେବେଳେ -
ସେଇ ଜାଲଟି ପାଲଟିଯିବ
ତାର ଉଷୁମ- ନରମ ଶେଯ ।

ବୁଢ଼ିଆଣୀର ଏଇ ଜାଲ
କେତେବେଳେ ତାର ଶେଯ ତ
କେତେବେଳେ ତାର ଦୋଳି,
କିନ୍ତୁ ଅନ୍ୟବେଳେ
ସିଏ ପାଲଟିଯାଏ
ପୋକ-ମାଛିଙ୍କ ମରଣ ଶିକୁଳି ॥

ବୁଢ଼ିଆଣୀ ନିଜେ କିନ୍ତୁ
କେବେ ସେ ଜାଲରେ
ଛନ୍ଦିଯିବାର ଅଜବ ଖବର
ତୁମେ ଶୁଣିଛ ନା ଜାଣିଛ ??
ନା -
ଯେଉଁ ବୁଢ଼ିଆଣୀ
ପୋକ-ମାଛିଙ୍କୁ ଧରିବା ପାଇଁ
ମରଣର ଜାଲ ଫାନ୍ଦେ
ସେ ବି ଦିନେ ଛନ୍ଦିଯାଏ
ନିଜ ଜାଲରେ ନୁହେଁ
ଅନ୍ୟ କାହା ଜାଲରେ,
ଯେଉଁ ଜାଲ
ସେ ବୁଣିଥିବା ଜାଲଠୁଁ
ଆହୁରି ସୂକ୍ଷ୍ମ
ଆହୁରି ପତଳା;
ଶତଚେଷ୍ଟାରେ ବି
ସେ ନିଜେ ଦେଖିପାରେନା ସେ ଜାଲକୁ
କିମ୍ବା କାଟି ପାରେନା ତାର ଶକ୍ତ ତନ୍ତୁ ।

ସେଇ ଅଦୃଶ୍ୟ ଜାଲରେ ଛନ୍ଦିଯାଇ
ଦିନେ ସେ ନିଜେ ପାଲଟିଯାଏ
ଗୋଟାଏ ଅସହାୟ
ମୃତ ମାଛି ।



# ପଲିଥିନ ଥଳି

ନିରାଶ୍ରୀ ଝିଅଟିଏ ଭଳି
ରାସ୍ତାଧାରରେ ପଡ଼ିଛି
ଗୋଟିଏ ପରିତ୍ୟକ୍ତ ପଲିଥିନ ଥଳି ।

କେତେବେଳେ ଅଚାନକ
ପାଗଳା ଖଣ୍ଡିଆଭୂତ
ତାକୁ ଘୂରାଇ ଘୂରାଇ
କଚାଡ଼ି ଦେଉଛି ଧୂଳିରେ ନେଇତ
କେତେବେଳେ ଦଲକାଏ
ହାଲୁକା ପବନ
ଉଡ଼ାଇ ଉଡ଼ାଇ ଗଡ଼ାଇଦେଉଛି ତାକୁ
କେଉଁ ଅଳିଆ - ଆବର୍ଜନାଭରା
ଅପନ୍ତରା ଗଳିରେ ॥

କେଉଁ ଏକ ଗଣଧର୍ଷିତା ଝିଅର
ଫଟା ଚିରା ପଣତ ପରି
ସେ ଏବେ ଅସହାୟ ଭାବରେ
ଫରଫର ଉଡୁଛି
ଓ ଥରଥର ଥରୁଚି;

ତା'ଆହତ ଆତ୍ମାର ଆକୁଳ ଆକୁତି
କେହି କଣ ବୁଝିଚି
ନା ବୁଝିପାରୁଚି ??

ଦିନେ ତା'ର ଥିଲା
ଉଦ୍‌ବେଳିତ ଯୌବନ;
ନାଲି, ନେଳି ଅଥବା ଗୋଲାପୀ ରଙ୍ଗରେ
ଚହଟି ଉଠୁଥିଲା
ତା'ର ମନମୋହିନୀ ଲାବଣ୍ୟ;
ଏବେ କିନ୍ତୁ
କାମ ଶେଷ ହେବା ପରେ
ସେ ପାଲଟିଯାଇଛି
କେଉଁ ନିର୍ଦ୍ଦୟ ଗ୍ରାହକର
ଏକ ପରିତ୍ୟକ୍ତ ମ୍ଳାନ ଓ ବିବର୍ଣ୍ଣ
ପଲିଥିନ୍‌ର ଥଳି;
ଯାହାକୁ ମନଇଛା ନଚାଉଛି
ଲମ୍ପଟ ପବନ,
ଆଉ ଯାହା ଉପରେ ଜମିଯାଇଛି
ରାଜରାସ୍ତାର ଧୂସର ଧୂଳି ।

ଏମିତି ଆଉ କେତେକାଳ
ସେ ଧୂଳିରେ ଗଡୁଥିବ ?
ପବନରେ ଉଡୁଥିବ ?
ଆଉ ନର୍ଦ୍ଦମାରେ ସଢୁଥିବ ?

ରଙ୍ଗୀନ ବେଲୁନ୍‌ଟିଏ ଭଳି
ନିରୋଳା ଆକାଶରେ ଉଡ଼ିଉଡ଼ି
ଆକାଶର ନୀଳପରୀଟିଏ ପରି
ସ୍ୱପ୍ନ ଦେଖିବାର ସୌଭାଗ୍ୟ ତା'ର କାହିଁ ?

ସେ କେବଳ ହତାଶ ହୃଦୟ
ଓ ଶୂନ୍ୟ ଚାହାଣି ନେଇ
ରହିଛି ଅନାଇ ।

କେବେ ହୁଏତ
ଜରିଗୋଟାଳି ପିଲାଟିଏ
ସକାଳୁ ସକାଳୁ
କାନ୍ଧରେ ଛିଣ୍ଡା ଅଖାଟିଏ ପକାଇ
ଶସ୍ତା ସିନେମା ଗୀତରୁ ପଦେପଦେ ଗାଇ
ଏଇବାଟେ ଆସିବ
ଆଉ ପତିତପାବନ ଶ୍ରୀରାମଙ୍କ ଭଳି
ତାକୁ ଏଇ ଅଳିଆ ଅପନ୍ତରାରୁ
ଉଦ୍ଧାର କରିବ;
ସେତେବେଳେ
ପାଷାଣୀ ଅହଲ୍ୟାର ସ୍ୱପ୍ନ ନେଇ
ସେ ଜାଗିଉଠିବ
ଏକ ନବଜନ୍ମର ଆନନ୍ଦରେ ।

•

# ଚାବି

ବନ୍ଦ ଦରଜାଟିରେ ଝୁଲିଝୁଲି
କଟାଇଲ ଏତେକାଳ,
ଆଉ ପୁଣି କେତେକାଳ ବିତାଇବ
କିଏ ବା କହିବ ?

ସତେବା ଯେମିତି
ତୁମେ ଏକ ଅମୋକ୍ଷ ବେତାଳ;
ଝୁଲିଝୁଲି ଉଦାସ ଆଖିରେ
ଶୂନ୍ୟକୁ ଚାହିଁବା ଛଡ଼ା
ତୁମର ବା ଅଛି କି ଉପାୟ ?
ସତ କୁହ
ଏ କଣ ତୁମର
ଅବଧାରିତ ଭାଗ୍ୟ ନା କପାଳ ??

ଦିନ ପରେ ଦିନ
ନିଜର ସୁରକ୍ଷା କଥା ଭୁଲିଯାଇ
ଜଗିଲ କେବଳ
ଘର-ମାଲିକର
ସିନ୍ଦୁକରେ ଭରା ଯେତେ
ଧନ ଓ ସଂପତ୍ତି;

ମୁହୂର୍ତ୍ତ ମୁହୂର୍ତ୍ତ ଧରି
କେତେ ଯେ ମୁହୂର୍ତ୍ତ
ବିତିଗଲା ଆଶଙ୍କାରେ
ହୁଏତ ବା କେତେବେଳେ
ଅଚାନକ ଆସିପାରେ
କେଉଁ ଚୋର-ତସ୍କରଙ୍କ
ଅତର୍କିତ  ଆକ୍ରମଣ ଜନିତ ବିପତ୍ତି ॥

ଏମିତି ଝୁଲୁଛ ତୁମେ କାହିଁ କେତେକାଳୁଁ
କେହି କଣ ଅଛି ତୁମ
ସାହା ନା ଭରସା ?
ପ୍ରଭୁଭକ୍ତ ଭୃତ୍ୟଟିଏ ଭଳି
ପୂରାପୂରି ନିଜକୁତ ଦେଇଛ ସମର୍ପି
ସଂପୂର୍ଣ୍ଣ ମର୍ଜି ଉପରେ ଘର ମାଲିକର,
ଏବଂ ତୁମ ନୁଖୁରା ଦେହରେ
ପରସ୍ତ ପରସ୍ତ ହୋଇ ଜମୁଅଛି ଧୂଳି,
ସହୁଅଛ ତୁମେ ପୁଣି
କେତେକେତେ ଖରା-ବର୍ଷା, ଶୀତ ଓ କାକର ॥

ଏମିତି ବା ଆଉ କେତେକାଳ
ଝୁଲୁଥିବ କୁହ ତୁମେ
ଏଇ ବନ୍ଦ ଦରଜାରେ
ଅସହାୟ ଅଭିଶପ୍ତ ବେତାଳଟେ ଭଳି ?
କେଉଁଠି ତୁମର ସ୍ଥାନ
ସ୍ୱର୍ଗ ନା ମର୍ତ୍ତ୍ୟରେ ?
ଝୁଲି ଝୁଲି କୁହ ତୁମେ

ଏମିତି ତୁମର କଣ
ବିତୁଥିବ ଦିନପରେ ଦିନ ?

ଅବଶ୍ୟ ତୁମର ଦିନେ
ଶେଷହେବ ଏ ଦୀର୍ଘ ପ୍ରତୀକ୍ଷା,
ଏ ବିଶ୍ୱାସ ପୋଷିଥାଅ ମନେ;
ଘରର ମାଲିକ ଦିନେ
ଅବଶ୍ୟ ଫେରିବ,
ଆଉ ତା' ଚାବିକାଠିର ଗୋପନ ସ୍ପର୍ଶରେ
ଖେଳିଯିବ ଅସମ୍ଭବ ଶିହରଣ ତୁମ
ଅଙ୍ଗେ ଅଙ୍ଗେ ପ୍ରତିଟି ତନ୍ତ୍ରୀରେ
ଏବଂ ଖୋଲିଯିବ -
ଅବରୁଦ୍ଧ ଏ ଅନ୍ଧ କୋଠରି;
ସେତେବେଳେ ହେବ ଯାଇ
ତୁମର ଅସହ୍ୟ ଏହି ବନ୍ଧନରୁ ମୁକ୍ତି,
ହେବ ଏ ବିରକ୍ତିକର
ଦୋଳାୟିତ ଜୀବନର
ଚରମ ଓ ପରମ ସମାପ୍ତି ।।



# ଛାଇ

କେ କୁଆଡ଼େ ଗଲେଣିତ ଚାଲି
ଆପଣା ବାଟରେ,
ତୁମେ କିନ୍ତୁ ଚାଲିଅଛ ମୋ' ପଛେପଛେ
ଏତେକାଳ ଧରି
ଅନୁଗତ ଆଜ୍ଞାବହ ସେବକଟି ପରି ॥

ମୁଁ ଠିଆହେଲେ
ଠିଆ ହେଉଅଛ ତୁମେ
ଚାଲିଲେ ଚାଲୁଛ;
ଶୋଇଲେ ଶୋଉଛ ପୁଣି
ମହା ଆରାମରେ;
କିନ୍ତୁ କେବେହେଲେ ତ କାହିଁ
ମୋ ପାଖରୁ ଯାଉନ ପଳାଇ ? ?

ମୁଁ ଆଲୋକପଥର ଯାତ୍ରୀ
ସୂର୍ଯ୍ୟକୁ ସାକ୍ଷୀରଖି ଚାଲିଛି ଆଗେଇ,
ତୁମେ କିନ୍ତୁ ଅନ୍ଧକାରେ ଗଢ଼ା ।
ଆଲୁଅରେ ମୁଁ ଦେଖିଛି
ତୁମର ସେ ଅନ୍ଧାରୁଆ ରୂପ;

ଅନ୍ଧାରରେ ତୁମେ କିନ୍ତୁ
ଦୃଶ୍ୟହୀନ, ସଂପୂର୍ଣ୍ଣ ଅରୂପ ॥

ଯେଉଁଦିନ ସାମ୍ନାର ଆଲୁଅ
ଚାଲି ଆସିବ ମୋ ପଛକୁ,
ମୁଁ ଠିକ୍ ଜାଣିଛି
ପଛଛାଡ଼ି ତୁମେ ଚାଲିଆସିବ ମୋ ଆଗକୁ
ଆଉ ଚାଲିବ ମୋ ଆଗେ ଆଗେ
ବାଟ ମୋତେ କଢ଼ାଇ କଢ଼ାଇ ॥

ଏତେଦିନ ମୁଁ ତୁମକୁ ସିନା
କଢ଼ାଇ ଆଣିଲି ବାଟ,
ଏବେ କିନ୍ତୁ
ତୁମେ ମୋତେ ବାଟ କଢ଼ାଇ ନେବ
ଆଗକୁ ଆଗକୁ ।

ଏମିତି ଚାଲୁଚାଲୁ
ହଠାତ୍ ଦିନେ ଦେଖିବ
ମୁଁ ଆଉ ନାହିଁ ତୁମ ପଛରେ,
ହୋଇଯାଇଛି ଅଦୃଶ୍ୟ,
ସମ୍ପୂର୍ଣ୍ଣ ଅଦୃଶ୍ୟ;
କେବଳ ତୁମେହିଁ ଚାଲିଛ
ଆଗକୁ ଆଗକୁ
ପାହୁଲ ପକାଇ ନିରବରେ
ନିଃଶବ୍ଦରେ
ସମସ୍ତଙ୍କ ଅଜ୍ଞାତରେ
ଏକ ଦୁରନ୍ତ କାଳପୁରୁଷ ଭଳି ॥



# ଛୁଞ୍ଚି

ଛୋଟ ପଥର ଖଣ୍ଡେ
ସହଜରେ ଭାଙ୍ଗି ଦେଇପାରେ
ଗୋଟିଏ ଝଲମଲ
କାଚର ମହଲ ।

ଛୋଟ ବୁଲେଟ୍‌ଟିଏ
ଆଖି ପିଛୁଳାକେ
ହରି ନେଇପାରେ
ଗୋଟିଏ ଅମୂଲ୍ୟ ଜୀବନ ॥

ଛୋଟ ଅଗ୍ନିକଣାଟିଏ
ଅନାୟାସେ
ଜାଳି ଦେଇପାରେ
ଗୋଟିଏ ମହାନଗର ।

କିନ୍ତୁ ଛୋଟ ଛୁଞ୍ଚିଟିଏ
ଗୁନ୍ଥି ଦେଇପାରେ
ନାନାରଙ୍ଗର ଶହଶହ ଫୁଟନ୍ତ ଫୁଲକୁ
ଗୋଟିଏ ସୁନ୍ଦର ମାଳରେ ॥

•

# ପଙ୍ଖା

ତୁମେତ ଘୂରୁଛ
କେବଳ ଘୂରୁଛ
ପାଗଳ ପରାଏ ଆହା !

ଘୂରିବାରେ ଏତେ
ଆନନ୍ଦ ଅଛି
ମୁଁ କାହୁଁ ଜାଣିବି ତାହା ? ?
ମୁଁ ବି ଘୂରୁଥିଲି ଦିନେ,
ସ୍ୱପ୍ନ-ମଧୁର
ଦୂର ଅତୀତର
ଶୈଶବ ଅଙ୍ଗନେ ।।

ଘୂରିଘୂରି ମୁହିଁ
ଖେଳୁଥିଲି ସେବେ
ଚକାଭଉଁରୀର ଖେଳ,

ଘୂରିଘୂରି ମୋର
ତନୁ ଓ ମନକୁ
କରୁଥିଲି ଚଞ୍ଚଳ ।
ସେଦିନ ଆଜିବା କାହିଁ ?

ଘୂରିବାର ଦିନ
    ହୋଇଛି ଅତୀତ
        ଅତୀତେ ଯାଇଛି ରହି ॥

ଅସ୍ଥିର ହୋଇ
    ଘୂରିବୁଲିବାର
        ବେଳତ ଯାଇଛି ଚାଲି,

ଏବେତ କେବଳ
    ସ୍ମୃତିରେ ସଜଳ
        ଅତୀତକୁ ଭାଳିଭାଳି

ସ୍ଥିର ନେତ୍ରରେ
    ଅନାଇ ଅନାଇ
        ବସି ରହିବାର ପାଳି ॥

ଘୂରିବାରେ ଯେଉଁ
    ଆନନ୍ଦ ତାହା
        ମୁଁ ଆଜି ପାଇବି କାହୁଁ ?
ଘୂରିବାର ଦିନ
    ଚାଲିଗଲା ଆହା
        ଚାଲିଗଲା ଚାହୁଁଚାହୁଁ ॥

ଜାଣିଛି ମୁଁ ତାହା
    ଜାଣିଅଛି ଭଲକରି,

ଯାଇଛି ଯେ ଦିନ
ଆଉ ଆସିବନି
ଆସିବନି ଆଉ ଫେରି ।

ତଥାପି ମୁଁ ଦିନେ
ଘୂରି ବୁଲୁଥିଲି
ଏଇ ସ୍ମୃତି ବହି ମନେ,

ତୁମ ଘୂରିବାକୁ
ଅନାଇ ରହିଛି
ମୁଗ୍ଧ ନୟନ କୋଣେ ॥

•

# ଆଖୁ

ଆଖୁ ହେଲା  ବୋଲି
ସବୁ ଆଖୁର ଯେ
ସମାନ ରସ ଥିବ
ଓ ସମାନ ମିଠା ଥିବ
ଏମିତି କିଛି କଥା ନାହିଁ ।

ଆଖୁର ଆଖୁତ୍ୱ ସିନା  ପରଖ ହୁଏ
ଚାଖୁଥିବା ଲୋକଟିର
ଦାନ୍ତ ଓ ଜିଭରେ ।
ତା' ଦାନ୍ତ ଓ ଜିଭ ହିଁ କହିଦିଏ
ତହିଁରେ ଭରି ରହିଛି
କେତେ ରସ
ଓ କେତେ ମିଠା ॥

ହଁ-ହଁ, ଆଉ ଗୋଟିଏ କଥା
ସବୁ ଚାଖୁଣିଆ କଣ ସମାନ ?
ନା, ସମସ୍ତେ କଣ ସମାନ ଭାବରେ
ଚାଖି ପାରନ୍ତି ତା' ମିଠା ?
ନା, ସମାନ ଭାବରେ ଚୋଷି ପାରନ୍ତି
ତା' ନିଟୋଳ ଦେହର ରସ ?

ଆଖୁର ରସକୁ ଚୋଷିବା ପାଇଁ
ଅବଶ୍ୟ ଲୋଡ଼ା
ଏକ ନିର୍ଦ୍ଦିଷ୍ଟ ଶକ୍ତି ଓ ବୟସ ॥

ଆଖୁ ହିଁ କେବଳ କଳିପାରେ
ଚାଖିବା ଲୋକର ପୌରୁଷ,
ବାରିପାରେ ତା' ଦାନ୍ତର ତୀକ୍ଷ୍ଣତା,
ମାପିପାରେ ତା' ମାଢ଼ିର ଶକ୍ତି
ଓ ଜିଭର ରସାସ୍ୱାଦନ କ୍ଷମତା ॥

ଚରମ ନିଷ୍ପେଷିତ ହେବାହିଁ ଯେମିତି
ତା'ର ଭାଗ୍ୟଲିପି
ଓ ଅଦୃଷ୍ଟ ନିୟତି ।
ଅଥଚ ଆଶ୍ଚର୍ଯ୍ୟର କଥା
ଏଥିରେହିଁ ତା'ର
ପରମ ଆନନ୍ଦ
ଓ ଚରମ ତୃପ୍ତି ॥

ମୁନିଆ ଦାନ୍ତରେ ଚିପିହୋଇ
ଦନ୍ତକ୍ଷତର ମଧୁର ଯନ୍ତ୍ରଣାରେ
ଅଥୟ ହେଲାବେଳେ
ତା' ଦେହର ସୁମଧୁର ରସକୁ
ଯେଉଁ ରସଲୁବ୍ଧ ସମର୍ଥ ରସିକଟିଏ ଶୋଷିନିଏ
ତା' ଆନନ୍ଦକୁ ବଳିଯାଏ
ନିଷ୍ପେଷିତ ଆଖୁର ଆନନ୍ଦ ।

ଧାଗୁଆ ଦାନ୍ତର ଉଦ୍ଧାମତା ପାଖରେ
ପରାସ୍ତ ହୋଇବି
ସେ ବରିନିଏ
ବିଜୟର ବିପୁଳ ଗୌରବ;
ଆଉ -
ବିକ୍ଷତ-ବିବଶ ଅଙ୍ଗର
ବିନମ୍ର ଆତ୍ମସମର୍ପଣରେ ହିଁ
ସେ ଖୋଜିପାଏ
ତା' ପରିପୂର୍ଣ୍ଣ ଜୀବନର
ଚରମ ସାର୍ଥକତା ।।

ଅଥର୍ବ ଓ ଅଶକ୍ତ ପୁରୁଷର ଦାନ୍ତ
କେବେ କ'ଣ ଚୋଷିପାରିଛି ନା ପାରିବ
ରସାଳ ଆଖୁର ରସ ?
ନା, ଗଳିତଦନ୍ତ ସ୍ଥବିରର ମାଢ଼ି
ଚାଖିପାରିବ
ତା' ନିଗିଡ଼ା ମଧୁର ମାଧୁର୍ଯ୍ୟ ?

ସେଇଥିପାଇଁତ
ଚିରକାଳ ଆଖୁର ପ୍ରାର୍ଥନା -
'ଯଦି ରସଦେଲ
ସମର୍ଥ ରସିକଟିଏ ଦିଅ,
ଆଉ ପୁଣି ଦିଅ ତାକୁ ଶକ୍ତିଶାଳୀ ଦାନ୍ତ,
ନହେଲେ ଏ ଜୀବନର ମୂଲ୍ୟ କଣ ଆଉ ?
ଅବା କଣ ମୂଲ୍ୟ ଏହି ପରିପୁଷ୍ଟ ରସାଳ ଦେହର ?
ଶୁଖିଶୁଖି ଅବଶେଷେ ଝରିଯିବା ଛଡ଼ା ??'

●

# ମାଛ

ନୀଳ ସାଗରର
ସାତତାଳ ପାଣିରେ ହେଉ,
ବା ଟୁବି ଗଡ଼ିଆର
ଆଣ୍ଠୁଏ ପାଣିରେ ହେଉ
ସବୁଠି ଖେଳିବୁଲିବା ହିଁ
ତୁମର ଆଦିମ ପ୍ରକୃତି ।
କେବେ କେଉଁଠି
ମୁହୂର୍ତ୍ତେ ସ୍ଥିର ହୋଇ
ତୁମେ ରହି ପାରିଛ ନା, ପାରିବ ?
ଚପଳତା ହିଁ ତୁମ ଅସ୍ଥିର ଜୀବନର
ସ୍ୱଭାବ-ସୌନ୍ଦର୍ଯ୍ୟ ।

ତୁମେ ତ ଏମିତି
ଖେଳି ବୁଲୁଛ ଯେ ବୁଲୁଛ
କାହିଁ କେଉଁ ପ୍ରଳୟକାଳରୁ ଅଦ୍ୟାବଧି,
ତୁମ ଖେଳର କଣ
ଶେଷ ଅଛି ନା ଅନ୍ତ ଅଛି ! ।

କେଉଁ ଚାହାଣି-ଚପଳା
ସୁନ୍ଦରୀ ମୀନନୟନାର

ଆୟତ ଆଖିର ଢେଉରେ ଢେଉରେ,
ବା କେଉଁ ବିମୁଗ୍ଧା ପାଞ୍ଚାଳୀର
ସ୍ୱୟଂବର-ସଭାର
ଘୂର୍ଣ୍ଣାୟମାନ ଆକାଶୀ ଲକ୍ଷ୍ୟରେ,
ଯେଉଁଠି ହେଉନା କାହିଁକି
ସବୁଠି ତୁମେ ସମାନ,
ସବୁଠି ତୁମର ଜୟଜୟକାର ।

ଆଦିମ କାମନାର ଆଇଁଷିଆ ଗନ୍ଧରେ
କ୍ଷଣକେ ମୁଗ୍ଧ-ବିଭୋର କରିଦେବାର
ଅପୂର୍ବ ଛଇଛଟକ୍
ତୁମଛଡ଼ା ଆଉ ବା କାହାକୁ
ଏତେ ବେଶି ଜଣା ?

ହୀରାର ଦ୍ୟୁତି ନେଇ ତିର୍ଯ୍ୟକ୍ ଗତିରେ
ତୁମେ ଖେଳିବୁଲ ବୋଲିତ
ତୁମକୁ ଖେଳେଇ ଖେଳେଇ
କାବୁ କରି ନେବାକୁ
ଚତୁର ଶିକାରୀ
ଫିଙ୍ଗିଦିଏ ସୁଆଦିଆ ଥୋପ ।

ବନ୍‌ଶୀର ମୁନିଆ କଣ୍ଟାରେ ହେଉ,
କି ଜାଲର ଫିସାଦିଆ ଫାଶରେ ହେଉ,
ଅତର୍କିତେ ବନ୍ଦୀ ହୋଇ
ଚିରକାଳ ପାଇଁ
ସ୍ଥିର ହୋଇଯିବାର ଭୟରେ
ତୁମେ ସିନା ସନ୍ତ୍ରସ୍ତ ଚିରକାଳ ॥

ତଥାପି ତୁମେ କଣ ଛାଡ଼ି ପାରିଛ
ତୁମ ସ୍ୱଭାବ-ସୁଲଭ ଚପଳତା ?
ନା ଛାଡ଼ି ପାରିଛ
ଖେଳିଖେଳି ଖେଳାଇବାର
ଆଦିମ ପ୍ରବଣତା ?

ଏହି ଲୀଳାୟିତ ଚପଳତା ହିଁ
ତୁମ ଜିଇବାର ଅନବଦ୍ୟ କଳା
ଆଉ ଜୀବନର ମଧୁମୟ ଛନ୍ଦ,
ଏଇ ଛନ୍ଦରେ ହିଁ ତୁମେ ଚିରକାଳ
ମୋହିତ କରିଛ ଚତୁର ଶିକାରୀକୁ
ଆଉ ଭରି ଦେଇଛ
ତା'ର ଅଣୁରେ ଅଣୁରେ
ତୁମ ଆଦିମ ଓ ବନ୍ୟ କାମନାର
ଆଇଁଷିଆ ଗନ୍ଧ ॥



## ଉଇହୁଙ୍କା

ମୁଁ ଯେଉଁଠି
ଯେତେବେଳେ
ଧୀରେ ଧୀରେ
ମୋ ଚାରିପାଖରେ
ଜମି ଯାଇଛି
ଖାଲି ବହି ଆଉ ବହି,
ଗଂଧାଗଦା ବହିର
ଅମାପ ସ୍ତୂପ ॥

ବହି ଗୁଡ଼ିକ ଯେମିତି
ଶୁଭ୍ର – ସଫେଦ ଉଇ
ଧୀରେ ଧୀରେ
ଯାଇଛନ୍ତି ଚରି
ମୋ ଦେହରେ
ମୋ ମନରେ
ଓ କ୍ରମଶଃ ମୋ ଆତ୍ମାରେ,
ଆଉ ମୁଁ ଯେମିତି
ପାଲଟି ଯାଇଛି
ଗୋଟିଏ ବିରାଟ ଉଇହୁଙ୍କା ॥

ବାଟଚଲା ଲୋକେ
ମୋ ପାଖ ଦେଇ ଗଲାବେଳେ
ବାହାରୁ କେବଳ ଶୁଣିଛନ୍ତି
ଗୋଟାଏ ଅଦ୍ଭୁତ ଗୁଣୁଗୁଣୁ ଶବ୍ଦ,
ଯାହା ଅବିରତ
ହୋଇଛି ଉଚ୍ଚାରିତ
ମୋ କଣ୍ଠରୁ ॥

ମୁଁ ଜାଣେନା
କେବେ ସେହି ଦିବ୍ୟ ମୁହୂର୍ତ୍ତ
ଆସିବ କି ନା,
ଯେଉଁଦିନ
ମୁଁ ଅବିରାମ ଘୋଷି ଚାଲିଥିବା
'ମରା ମରା' ଶବ୍ଦ ବଦଳରେ
'ରାମ ରାମ' କହି କହି
ଏବଂ ଏକ
ରମଣୀୟ ଦିବ୍ୟ ରୂପ ନେଇ
ହସିହସି ବାହାରି ଆସିବି
ସେଇ ଉଇହୁଙ୍କା ଭିତରୁ
ବାଲ୍ମୀକିଟିଏ ହୋଇ ! !

•

# ଅଲେଖା କାଗଜ

ମୋ ପାଖରେ
ଟେବୁଲ ଉପରେ
ସଜା ହୋଇ ରହିଥିଲା
କିଛି ଅଲେଖା କାଗଜ;
ଆଉ ସେହି ଧଳାଧଳା କାଗଜ ଗୁଡ଼ିକ
ଗୋରା ତକତକ –
ଷୋଡ଼ଶୀ କୁମାରୀ ଭଳି
ମୋ ଆଡ଼କୁ
ସତୃଷ୍ଣ ନୟନରେ ଅନାଇ ଅନାଇ
ହସୁଥିଲେ ଖିଲିଖିଲି ।

ମୁଁ ସେହି ସାଦାଫରଫର
ମୁଲାଏମ୍ କାଗଜରୁ ଖଣ୍ଡିଏ
ଖୁବ୍ ଆଗ୍ରହରେ ଟାଣିଆଣି
କିଛି ଲେଖିବାକୁ ଆରମ୍ଭକଲି ।

ଚାହୁଁଚାହୁଁ
ଦୁର୍ଦ୍ଧର୍ଷ କଲମ ମୋର
ତା'ର ପୌରୁଷ ଜାହିର କଲା
ହେହି ନିରୀହା କାଗଜ ଉପରେ,

ଆଉ କିଛିକ୍ଷଣ ପରେ
ଝରିଝରି ଆସିଲା
ମୋ ଉତ୍ତରଳ ଭାବନାର
ବିନ୍ଦୁବିନ୍ଦୁ ବିଚିତ୍ରବୀର୍ଯ୍ୟ,
ଯାହା –
ସେହି କାଗଜର ଗର୍ଭକୋଷରେ
ସଞ୍ଚାରିତ ହୋଇଗଲା
ଶହଶହ ଅର୍ଥପୂର୍ଣ୍ଣ ରସାଳ ଶବ୍ଦରେ ।

କିନ୍ତୁ କି ବିଚିତ୍ର !
ସେତେବେଳକୁ
ସେହି ଅଲେଖା କାଗଜ ଖଣ୍ଡକ
ଏକ ନିରୀହା ଓ ଅସହାୟା
ଧର୍ଷିତା କୁମାରୀ ଭଳି
ହରାଇ ସାରିଥିଲା
ତା' ନିର୍ମଳ ଓ ନିଷ୍କଳଙ୍କ
ସଫେଦ ଚରିତ୍ର ॥



# ନର୍ଦ୍ଦମାର ଫୁଲ

ଜଣେ କେହି
ମହାନଗରର ନର୍ଦ୍ଦମାରେ
ଫିଙ୍ଗିଦେଇ ଯାଇଛି
ସଜଫୁଟା ଫୁଲଟିଏ ।

ରଙ୍ଗରେ ଚହଟୁଥିବା
ସୁଗନ୍ଧରେ ମହକୁଥିବା
ରୂପରେ ଝଲସୁଥିବା
ଫୁଲଟିର କଅଁଳିଆ ଦେହ
ଏବେ ସଢୁଛି
ନର୍ଦ୍ଦମାର ଦୂଷିତ ପାଣିରେ,
ଆଉ ସେହି
ଅସହାୟା କୁଆଁରୀ ଫୁଲଟି
ଲୁହ ଛଳଛଳ
ବିକଳ ଆଖିରେ
ଚାହିଁଛି,
କେବଳ ଚାହିଁଛି
କରୁଣ ନିରୀହ ଠାଣିରେ ॥

ସିଏ କଣ
କେବେ ଭାବିଥିଲା
ନା ଜାଣିଥିଲା
ଫୁଟିବାର ଗୌରବ
ହଠାତ୍ ଏମିତି ଦିନେ
ପାଲଟିଯିବ
ଲୋଟିବାର ବୀଭତ୍ସ ରୌରବ ?
ଆଉ,
ଏକ ବିଡ଼ମ୍ବିତ ଭାଗ୍ୟ ନେଇ
ସେ ନିରବରେ କରିବ
ଅସହ୍ୟ ନରକସ୍ନାନ ??

ନର୍ଦ୍ଦମାରେ ସଢୁଥିବା
ସଦ୍ୟଫୁଟା ଫୁଲଟିର
ସାଥି ଏବେ
ସଂଖ୍ୟାହୀନ ନରକର କୀଟ;
ଅଥଚ ରସିକପଣରେ
ସେହି ସଦ୍ୟଫୁଟା ଫୁଲଟିକୁ
ଆଗ୍ରହରେ ତୋଳି ଆଣିଥିବା
ଫଟା-ରସିକଟି
ଆପଣା ଛାତିରେ ହାତପିଟି
ଅତି ନିର୍ଲଜ୍ଜ ଭାବରେ
ଆପଣାକୁ ବୋଲଉଛି
'ରସିକ ସମ୍ରାଟ' ॥



# ଘୁଷୁରି

ମଣିଷର ମଳଠାରୁ
ଗଛର ମୂଳ ପର୍ଯ୍ୟନ୍ତ
କେଉଁଟା ବା ତୋର ଖାଦ୍ୟ ନୁହେଁ!
ସବୁତ ତୋର ଦିବ୍ୟ ଆହାର।
ନାଳ-ନର୍ଦ୍ଦମାର ପଚା ପାଣିତ
ତୋ'ପାଇଁ ପବିତ୍ର ଗଙ୍ଗାଜଳ!!

ତିଳେହେଲେ ଘୃଣା ନାହିଁ
ରୁଚି-ଅରୁଚିର ପ୍ରଶ୍ନ ନାହିଁ,
ଖାଦ୍ୟ-ଅଖାଦ୍ୟର ବିଚାର ନାହିଁ,
ତୁ ସତେ ଯେମିତି
ଏକାନ୍ତ ନିର୍ବିକାର
ସିଦ୍ଧ ଓ ଶୁଦ୍ଧପୁରୁଷ
ତ୍ରୈଲଙ୍ଗ ସ୍ୱାମୀ ॥

ଏମିତି
ଯାବତୀୟ ଅଖାଦ୍ୟ ଖାଉଖାଉ
ତୁ ତ ଦିନେ ପାଲଟି ଯାଉ
ମଣିଷର ଖାଦ୍ୟ,
ପରମ ସୁସ୍ୱାଦୁ ଭୋଜନ।

ଅଥଚ ଆମେ ପ୍ରତିଦିନ
ସୁଖାଦ୍ୟ ଖାଉଥିବା
ସଂଭ୍ରାନ୍ତ ଓ ଅଭିଜାତ ମଣିଷମାନେ
କ୍ରମେକ୍ରମେ ପାଲଟି ଯାଉଛନ୍ତି
ସମାଜର ଜଣେଜଣେ
ଘୃଣିତ 'ଅଖାଦ୍ୟ' ! !

# ପାହାଡ଼

ମନେପଡ଼େ
କେବେ ଦିନେ ପିଲାବେଳେ
ସାନ ସାନ ବାଲିଗରଡ଼ାରେ
ଖେଳୁଥିଲି ଖେଳ,
କ୍ରମେକ୍ରମେ
ସେ ବାଲିଗରଡ଼ା ସବୁ ପାଲଟିଲା
ଛୋଟଛୋଟ ପଥରର ଖଣ୍ଡ,
ଏବଂ ସେ ପଥରଖଣ୍ଡ
ବଢ଼ିବଢ଼ି ଅବଶେଷେ
ପାଲଟିଲା ବିରାଟ ପାହାଡ଼ ।

ମୁଁ ଆଜି ସେହି
ପାହାଡ଼ର ଭାର ବୋହିବୋହି
ଧୀରେଧୀରେ ନଇଁନଇଁ
ତଳକୁ ତଳକୁ କ୍ରମେ ଯାଉଅଛି ଚାପି;
ତଥାପି ସେ ଦୂର ଅତୀତର
ବାଲିଗରଡ଼ାକୁ ନେଇ ଖେଳିବାର ସ୍ମୃତି,
ବେଳେବେଳେ ମନତଳେ
ଉଙ୍କିମାରି ଜାଗୁଛି ଅଦ୍ୟାପି ।

ଏଇ ଯେ ପାହାଡ଼...
କେତେ ତା'ର ନୀଳ ଉପତ୍ୟକା
କେତେ ଘନ ଅରଣ୍ୟାନୀ
କେତେ କେତେ ନୃତ୍ୟରତା ଆରଣ୍ୟ ନିର୍ଝର
କେତେ ବନ-ବିହଙ୍ଗୀର
ଲଳିତ କୂଜନ ପୁଣି
କେତେ ଲତା, କେତେ ଗୁଳ୍ମ
କେତେ ବନଫୁଲ;
କେତେ ମୁଗ୍ଧ ମୟୂରର ନାଚ,
କେତେକେତେ କ୍ଷିପ୍ରଗତି
ଛୁଟନ୍ତ ମୃଗର ଯୂଥ
ଆଉ ପୁଣି ଅବିନ୍ୟସ୍ତ ଶିଳାର ପାହାଚ;
ସଙ୍ଗିନୀ-ସନ୍ଧାନୀ କେତେ
ଭୀମକାନ୍ତ ବାଘର ହେଣ୍ଟାଳ,
ସାପର କୁଟିଳ ଗତି
ଘନ-ବନ ଶୀର୍ଷ ଦେଶେ
ଧାଡ଼ିଧାଡ଼ି ଉଡ଼ନ୍ତା ମରାଳ;
ଏ ସବୁକୁ ତା' ବୁକୁରେ ବହି
ସ୍ଥିର ହୋଇ ରହିଚି ପାହାଡ଼
ଆଉ ସେହି ପାହାଡ଼କୁ ବୋହି
ମୁଁ ରହିଛି ଜିଇ
କ୍ରମେ କ୍ରମେ ନଇଁଆସେ
ମୋର ମେରୁହାଡ଼ ।

ବାଲିର ଗରଡ଼ା ସବୁ
କାଳକ୍ରମେ ପାଲଟିବେ
ପାହାଡ଼ ଯେ ଦିନେ

ମୁଁ କି ଥିଲି ଜାଣି ?
ଶୈଶବର ଖେଳ ଶେଷେ ଚାହିଁଲା ବେଳକୁ
ପଥରର ଭାର ବୋହି ବୋହି
ମୁଁ ନିଜେ ପାହାଡ଼ ହୋଇ
ପାଲଟିଛି ଗୋଟାଏ କାହାଣୀ ।

ଶିଖର ମୋ ଛୁଉଁଛି ଆକାଶ;
ତଳେ କିନ୍ତୁ ଚାରିପାଶେ ମୋର
ଅନନ୍ତ ଦିଗନ୍ତବ୍ୟାପୀ
ବିସ୍ତାରିତ ଶ୍ୟାମ-ଘନ ଘାସ;
ଘାସ ଓ ଆକାଶ ଏବେ
ଏଇ ମୋର ପ୍ରସ୍ତରିତ ଜୀବନର ସାଥୀ;
ମୋ ଆଖିରେ ଏକାକାର
ସକାଳର
ସୂର୍ଯ୍ୟୋଦୟ
ଆଉ ପୁଣି ଘନଘୋର
ତମିସ୍ରାର ରାତି ॥

•

# ଧୂଆଁ

ଧୂଆଁ !
ତୁମେତ ଚିରକାଳ ଉପରମୁହାଁ;
ନିଉନମୁହାଁ ହେବା
କେହି କେବେ ଦେଖିନାହିଁ କି ଶୁଣିନାହିଁ ।

ତୁମେ କେବଳ
ଉଡ଼ିବା ଶିଖିଚ
ବୁଡ଼ିବା ଶିଖିନ,
ଘୋଟିବା ଶିଖିଚ
ଲୋଟିବା ଶିଖିନ ।

ତୁମେ ନିଜକୁ
ଭିଣାତୁଳା ଭଳି ଭିଣିଭିଣି
ଉଡ଼ାଇ ଦେଇଛ ଚିରକାଳ
ଖେଳାଇ ଦେଇଛ ଚିରକାଳ,
କିନ୍ତୁ କେବେବି ନିଜକୁ
ଘୋଡ଼ାଇ ରଖିବାର
ଅପଚେଷ୍ଟା କରିନ ।

ହଁ, କାହିଁକି ନିଜକୁ
ଘୋଡ଼ାଇ ରଖିବ ଯେ !
ଗୋପନୀୟ ବୋଲି
କଣ ବା ତୁମର ଅଛି ?

ତୁମେତ ଅଗ୍ନି-ସମ୍ଭୂତା,
ଅଗ୍ନି କଣ କେବେ
ନିଜକୁ ଘୋଡ଼ାଇ ରଖେ
ନା, ଲୁଚାଇ ରଖେ ?
ତା'ର ଝିଅ ହୋଇ
ତୁମେ ବା କାହିଁକି
ଲୁଚାଇ ରଖିବ ନିଜକୁ ?
ସେପାଇଁ ଖୋଲି ଦେଇଛ,
ମେଲି ଦେଇଛ ନିଜକୁ
ଆଉ ଛାଇଯାଉଛ ଚଉଦିଗ ।

କିନ୍ତୁ ତୁମର ଧୂସର ଓଢ଼ଣି ତଳେ
ମୁହଁ ଲୁଚାଇ ଛପିଯାଉଥିବା
ଚତୁର ଲୋକମାନଙ୍କୁ ତୁମେ ଚିହ୍ନିଚକି ?
ଯେଉଁମାନଙ୍କ ଧୂଆଁଳିଆ କଥାର
କଳା ବୋର୍ଖା ତଳେ
ସତ୍ୟ ମୁହଁ ଲୁଚାଇ
ସଢ଼ିଯାଏ ଲାଜରେ !

ଧୂଆଁ !
ତୁମେ ଯେହେତୁ
ଚିରକାଳ ଉପରମୁହାଁ

ନିଉନମୁହାଁ ହେବା
ତୁମ ଜାତକରେ ନାହିଁ;
ଅଥଚ –
ମଉନମୁହାଁ ଚତୁରମାନଙ୍କୁ
ଘୋଡ଼ାଇ ରଖୁଚ କାହିଁକି
ତୁମ ଧୂସର ଓଢ଼ଣିରେ ?

ଦିଅ, ଖୋଲିଦିଅ
ସେମାନଙ୍କର ମୁହଁ;
ଶାଣିତ ସତ୍ୟର ଜ୍ୱଳନ୍ତ ନିଆଁରେ
ଝଲମଲ୍ କରୁ ଚଉଦିଗ
ମାଡ଼ିଆସୁ ବେଗବାନ୍ ଆଲୁଅର ସୁଅ ।

•

# ଜିଭ

ସେ'ତ ବଡ଼ ଅମାନିଆ
ବଡ଼ ମାରାତ୍ମକ,
ନିହାତି ଅବୋଲକରା
କେବେ ଖନା,
କେବେ ମୂକ,
କେବେ ବାବଦୂକ ॥

କେତେବେଳେ କଣ କହେ
କେତେବେଳେ କଣ ଖାଏ
ବୁଝିବା ମୁଷ୍କିଲ,
ଅରଣା ମଇଁଷି ଭଳି
ଏକାନ୍ତ ଅସ୍ଥିର ସିଏ
ଲହଲହ ହେଉଥାଏ
ହେଉଥାଏ ଏପାଖ ସେପାଖ
ଖାଲି ରହିରହି,
ବୋଲ ମାନିବା ଯେମିତି
ନାହିଁନାହିଁ, ତା'ଜାତକେ ନାହିଁ ॥

କେବେ ବାଟ ହୁଡ଼ିଗଲେ
ସୃଷ୍ଟିକରେ ସେ ମହାପ୍ରଳୟ

ବୁଡ଼ାଇ ଦିଏ ସେ ଭେଳା,
ସେ ଯେମିତି ସତେ ଏକ
ଅମଣା ବଳଦ
ଯୋଖିଦେଲେ ଯୁଆଳିରେ
ଲାଞ୍ଜଟେକି ମାରୁଥାଏ ଚିଲା ॥

ଯଦି ତାକୁ କଳେବଳେ
ଛଳେ-କଉଶଳେ
କରାଯାଏ ବନ୍ଦ
ସୃଷ୍ଟି କରେ ବିରାଟ ବିଭ୍ରାଟ,
ସେ ଯେ ମହା ଭୟଙ୍କର
ବାଘଠାରୁ ପୁଣି,
ମତ୍ତହସ୍ତୀଠାରୁ ସିଏ
ମହା ବଳୀୟାନ
ଉପୁଯାଏ ବିଷମ ସଂକଟ ॥

ତାକୁ ଯିଏ ଅନାୟାସେ
କରିପାରେ ସଂଯତ ଓ ମଣ,
ସେଯେ ମହା ପାରିବାର -
ସମର୍ଥ ପୁରୁଷ,
ତୁମେ ତାକୁ ମହାପ୍ରାଜ୍ଞ
ବିଜ୍ଞ ବୋଲି ଜାଣ ॥

# ଧନ୍ୟ

ଫାଲ୍‌ଗୁନ ଶେଷର ନରମ ସକାଳ ।
ଚକ୍‌ଚକ୍ ନୂଆ କଅଁଳ ପତ୍ରରେ
ସଜେଇ ହୋଇଥିବା
ଦେବଦାରୁ ଗଛଟିର ମଥା
ପବନରେ ଧୀରେଧୀରେ
ନଇଁ ଯାଉଁଯାଉଁ
ଅକସ୍ମାତ୍ ଆଉଜି ଯାଇଛି
ଗୋଟିଏ କଙ୍କ୍ରିଟ୍-ଖୁଣ୍ଟରେ ।

ଗେହ୍ଲେଇ ଗେହ୍ଲେଇ
ତା'ଦିହରେ ଘଷିହେଉଛି ସରାଗରେ,
ଆଉ ହସି ଦେଉଛି
ଇଷତ୍ ସବୁଜ ହସ ।
କଂକ୍ରିଟ୍‌ର ରୁକ୍ଷ ଓ ଧୂସର ଦେହରେବି
ଶାନ୍ତ ସବୁଜିମାର ତଡ଼ିତ୍ ଶିହରଣ ।
କିନ୍ତୁ, ସେ କଣ ବୁଝିପାରୁଛି
ଅନୁରାଗର ଭାଷା !
ନା ପଢ଼ିପାରୁଛି
ପହିଲି ପ୍ରେମର ବର୍ଣ୍ଣମାଳା ! !

ପବନରେ ଆସ୍ତେ ନଇଁଯାଇ
ଭାଙ୍ଗିପଡୁଥିବା ଦେବଦାରୁଟି କିନ୍ତୁ
ଟିକିଏ ଆଶ୍ରା ପାଇ
ହୋଇଯାଇଛି ଧନ୍ୟ ॥

# ପଥରର ସ୍ୱପ୍ନ

ପାହାଡ଼ ଫଟାଇଲେ ପଥର
ଆଉ ପଥର ଫଟାଇଲେ
କଠୋର ହାତୁଡ଼ି ମାଡ଼ରେ
ଛିଟ୍‌କି ଆସେ ଅଗ୍ନିକଣା,
ଅଗ୍ନିକଣା ତ ନୁହେଁ
ଲାଲ୍ ଟକ୍‌ଟକ୍ ନିଆଁର ଝରଣା ॥

ରୁକ୍ଷ ଦେହ
ଆଉ ଆଗ୍ନେୟ ମନ ନେଇ
ଯୁଗଯୁଗ ଧରି
ପଡ଼ିରହିଥାଏ ବିଚରା ପଥର;
ତା'ଉପରେ
ଝରି ପଡୁଥାଏ
ସମୟର ପରିତ୍ୟକ୍ତ
ଶୁଖିଲା ପତର ॥

ସେ କଣ ବୁଝେ
କୋମଳତାର ସଂଜ୍ଞା
ନା ହୃଦୟର ଅର୍ଥ !

ତା'ପାଖରେ ମନେହୁଏ
ଏସବୁ ଯେମିତି
ନିରର୍ଥ ଓ ବ୍ୟର୍ଥ ।
ତେବେ
କଠୋରହୃଦୟ ପଥରଟି
ଯେତେବେଳେ
ପାହାଡ଼ୀ ଝରଣାରେ ଭିଜିଭିଜି
ଶ୍ୟାମଳୀ ଶିଉଳିକୁ
ବୁକୁରେ ଜାକି ଧରି
ଗେଲ କରେ, ଚୁମାଦିଏ
ପାହାଡ଼ ଚକିତ ହୁଏ
ଚକିତ ହୁଏ ସାରା ଅରଣ୍ୟାନି,
ପଥର ବି ବୁଝିପାରେ
ଆପଣାର ବ୍ୟଥାଦଗ୍ଧ ହୃଦୟର ଗ୍ଳାନି ॥

ସ୍ୱପ୍ନ ଦେଖେ ସେତେବେଳେ
ନିଠୁର ପଥର;
ତା'ଛାତିର ଅଗ୍ନିକଣା
କ୍ରମେକ୍ରମେ ଯାଉଛି ପାଲଟି
ଲକ୍ଷଲକ୍ଷ କୋମଳାଙ୍ଗୀ କୃଷ୍ଣଚୂଡ଼ା ଫୁଲ ॥

•

# ଗୋଟିଏ ନିର୍ଜନ ଘର

କାହିଁ କେଉଁକାଳୁ
ଠିଆ ହୋଇଛି ଏଠି ଚୁପ୍‌ଚାପ୍
ଗୋଟିଏ ପରିତ୍ୟକ୍ତ ନିର୍ଜନ ଘର,
ଯାହାର ପ୍ରତିଟି କକ୍ଷରେ
ନିରବତାରେ ନିଃଶବ୍ଦ କୋଳାହଳ ।

ଝୁଲନ୍ତ ବାଦୁଡ଼ି ଭଳି
ପ୍ରତିଟି କଡ଼ି-ବରଗାରେ ଝୁଲୁଛି କେବଳ
ଅରନ୍ଧ୍ର ଅନ୍ଧକାର,
ଆଉ ଶୁଭୁଛି ଯେପରି
ଭଙ୍ଗାରୁଜା ଦରଜା କୋଣରେ
ଲୁଚିଛପି ରହିଥିବା
କେତେଗୋଟି ଅଶରୀରୀ ଅମୋକ୍ଷ ଆତ୍ମାର
ଅଶାନ୍ତ ହାହାକାର
ଓ ନିଭୃତ ଚିତ୍‌କାର ।

ଏ ଘର କାନ୍ଥରେ ଦିନେ
ସ୍ୱପ୍ନ ସବୁ ଲେସି ଯାଇଥିଲା
ଚହଟ ଚିକ୍‌କଣ ପଲସ୍ତରା ହୋଇ;
ଆଜି କିନ୍ତୁ ସେ ସବୁ ପଡୁଛି ଝରି
କ୍ଷୟିଷ୍ଣୁ କାନ୍ଥରୁ
ଧୂସର ସ୍ମୃତିର ରୂପ ନେଇ ।

ବର୍ଷବର୍ଷ ଧରି
ପାଣିଖିଆ ଛାତର ଛାତିରେ
ଛାଇ ଯାଇଥିବା
ବୁଢ଼ିଆଣୀ ଜାଲର ଘେରରେ
ଉଠୁଛି ଉକୁଟି
ଅଦ୍ଭୁତ ଅଦ୍ଭୁତ ଜଳଛବିର ଚିତ୍ର
ଏ ଦୃଶ୍ୟ, ଆହା କି ବିଚିତ୍ର ! !

ଅତୀତରେ ହୁଏତ ବା ଦିନେ
କେଉଁ ଏକ ନବବଧୂର ନୂପୁର ନିକ୍ୱଣେ
ହୋଇଥିବ ଗୁଞ୍ଜରିତ ଏହି ଗୃହାଙ୍ଗନ;
ବାସର ନିଶିରେ ମୁଗ୍ଧ ମଧୁଚନ୍ଦ୍ରିକାରେ
ହୋଇଥିବ ପୁଲକିତ
ମିଳନପିଆସୀ ଦୁଇ
ଥରଥର ତନୁ ଆଉ ମନ ।

ଅବା କେଉଁ ନବଜାତକର
ଶୁଭ ଆଗମନେ ଏଠି
ଶୁଭଶଙ୍ଖ ହୁଏତ ବା
ଉଠିଥିବ ବାଜି,
ଯାଇଥିବ ଖେଳିଖେଳି
ଆନନ୍ଦର ବିପୁଳ ଲହରୀ;
ମୁଖରିତ ଗୃହାଙ୍ଗନେ ଉଠିଥିବ ଜଳି
ଉଦ୍ଦୀପିତ ପବିତ୍ର ଦୀପାଳୀ ! !

କେବେ ଅବା ଆଦ୍ୟ ଯୌବନରେ
ମୁଗ୍ଧା କେଉଁ ଭୀରୁ ବାଳିକାର
ଗୁଣୁଗୁଣୁ ପ୍ରେମର ସଂଗୀତ
ଏ ଘରର ପବନେ ପବନେ
ହୋଇଥିବ ଦିନେ ଗୁଞ୍ଜରିତ ।

ଅବା କେଉଁ ଚପଳ ଶିଶୁର
ଅସ୍ଥିର ଓ ଟଳମଳ ପାଦ
ଏ ଘରର ମସୃଣ ଚତ୍ୱରେ
କେତେଥର ଯାଇଥିବ ଖସି;

ପ୍ରଗଲ୍ଭା ଗୃହିଣୀ ଦଳ
କେବେ କେବେ ଲଘୁ ଆଳାପରେ-
ମୁଖରିତ କରି ଗୃହାଙ୍ଗନ
ଆନନ୍ଦରେ ଉଠିଥିବେ ହସି ।

ହସ-କାନ୍ଦ, ସୁଖ-ଦୁଃଖ,
ମିଳନ-ବିରହ
ମିଶ୍ରରାଗେ ଯେ ମୂର୍ଚ୍ଛନା
ତୋଳୁଥିଲେ ଏଠି ଅହରହ
ସେସବୁ ହୋଇଛି ସ୍ତବ୍ଧ
ନିର୍ଜନତା ଦେଇଅଛି ଗ୍ରାସି,
ଅଜଣା ପକ୍ଷୀର ଡାକେ
ବେଳେବେଳେ ପ୍ରତିଧ୍ୱନି ଖାଲି
ଅଦୂରରୁ ଆଂସୁଅଛି ଭାସି ॥

କିନ୍ତୁ ଏହି ପରିତ୍ୟକ୍ତ ନିର୍ଜନ ଘରର
ନିର୍ଜନତା ଖାଲି କଣ
ବନ୍ଦୀ ହୋଇ ରହିଛି ଏଠାରେ ?

ମନେହୁଏ ଆମ ଅଲକ୍ଷ୍ୟରେ

ସେ ଯେମିତି ପଶିଆସି

ଆମର ଏ ସୁସଜ୍ଜିତ ପ୍ରତିଟି ଗୃହରେ

ଯାଇଅଛି ଢୁକି,

ଆଉ ତାର ମୂକ ନିରବତା,

ଆମର ପ୍ରତିଟି ମୁହେଁ ଲେସିହୋଇ

ଡୋଳିଅଛି ଅଖଣ୍ଡ ମୌନତା ।

ଜୀବନ ଥାଇବି ଆମେ

ଜଣେଜଣେ ମୃତ ଅଧିବାସୀ

କୋଳାହଳେ ପରିପୂର୍ଣ୍ଣ

ଆମର ଏ ନିର୍ଜନ ଘରର,

ଜୀବନ୍ତ ପ୍ରେତାତ୍ମା ଆମ

ଅତୃପ୍ତ ଆକାଂକ୍ଷା ନେଇ

ଘୂରିବୁଲେ ଏଠି

କଣ୍ଠେ ଭରି ଆର୍ତ୍ତ ହାହାକାର ।

●

# ନାମ ଫଳକ

ବସାଟିଏ ବାନ୍ଧିବାର
ପ୍ରବଳ ନିଶାରେ
ପାଗଳପ୍ରାୟ ହୋଇଯାଇଥିଲେ
ଦୁଇପ୍ରାଣୀ
ସ୍ୱାମୀ ଆଉ ସ୍ତ୍ରୀ ।

ନୂଆ ଘରଟିଏ ତିଆରି ସରିଲା,
ସ୍ତ୍ରୀଟି ଗେହ୍ଲେଇ ହେଇ
ସ୍ୱାମୀକୁ କହିଲା –
ଶୁଣୁଚ ?
ଘର ଆଗରେ
ତୁମ ନାଁ ଓ ମୋ ନାଁକୁ ଯୋଡ଼ି
ଫଳକଟିଏ ଲଗାଇଲେ
କେମିତି ହୁଅନ୍ତା ?
ନାଁ ଆମର ରହିଯାଆନ୍ତା
କାଳକାଳକୁ ।
ମଥାଟୁଙ୍ଗାରି
ବାଧ୍ୟ ଶିଶୁଟିଏ ଭଳି
ହଁ ଭରିଲେ ସ୍ୱାମୀ ॥

ତା'ପରେ
ନୂଆଘରର ପ୍ରବେଶ-ଦ୍ୱାରରେ
ଚହଟିଲା
ଚକ୍‌ଚକ୍ ମାର୍ବଲର ଫଳକଟିଏ,
ଯେଉଁଥିରେ ଲେଖା ହୋଇଥିଲା -
'ମାନସ-ମନୋରମା' ॥

ଆଉ ଦିନେ
ଚଇତ୍ରର କେଉଁ ଏକ
ଅଳସ ଅପରାହ୍ନେ
ସ୍ୱାମୀ-ସ୍ତ୍ରୀ ଦୁହେଁ
ବସିଥିଲେ
ଘରଆଗ ବଉଳମୂଳରେ,
ଝରୁଥିଲା ଚୁପ୍‌ଚାପ୍
ପତ୍ର କେତେଗୋଟି
ବଉଳଶାଖାରୁ,
ସଞ୍ଜୀନଇଁ ଆସୁଥିଲା
ଦୂର ଦିଗନ୍ତରୁ ॥

ରାସ୍ତା ଆରପଟେ
ନଣ୍ଡା ପାହାଡ଼ଟେ ଭଳି
ଆକାଶକୁ ଚାହିଁ
ଅସହାୟ ଭାବେ ଅତି
ହୋଇଥିଲା ଠିଆ
ସେ କେଉଁକାଳର ଏକ
ଭଂଗା କୋଠାଘର,
ଯେଉଁଥିରୁ ଅବିରତ
ଝରୁଥିଲା ଚୂନ-ବାଲି,
ଇଟା ଓ ପଥର ॥

ସେଇବାଟେ ଯାଉଁଯାଉଁ
ଛୋଟ ପିଲାଟିଏ
ହଠାତ୍ କଣ ଭାବିଲା କେଜାଣି
ଛୋଟ ଇଟାଟିଏ
ମାଟିରୁ ଗୋଟାଇ ଆଣି
ସେ ଭଂଗାକାନ୍ଥରେ
କେଉଁକାଳୁ ଲାଗିଥିବା
ମଳିଛିଆ ଫଳକ ଉପରେ
ଟାଣିଦେଲା ଅନାବନା ଗାର କେତେଗୋଟି,
ଆଉ, ତା'ପରେ ସେଇ ଇଟାଟିକୁ
ଭଂଗାଘର ଉପରକୁ
ଲକ୍ଷ୍ୟକରି ଧୀରେ ଦେଲା ଛାଟି ॥

ଏହା ଦେଖି
ନିରବତା ଭାଂଗିଦେଇ
ହଠାତ୍ ସ୍ତ୍ରୀଟି
କହିଲା ସ୍ୱାମୀକୁ -
ଦେଖୁଚ ଦେଖୁଚ
ବଂଗୁଲିଆ ଏ ଚଗଲା -
ପିଲାଟାର କାଣ୍ଡ ?

ଚୁପ୍‌ଚାପ୍ ନିରବରେ
ବସିଥିବା ସ୍ୱାମୀ କିନ୍ତୁ
ଠିକ୍ ସେତେବେଳେ
ନିଷ୍ପ୍ରଭ ନୟନ ତାଙ୍କ
ଆଣୁଥିଲେ ସଧୀରେ ବୁଲାଇ
ନିଜଘରେ ଖୁଞ୍ଚିଥିବା
ନିଜ 'ନାମ-ଫଳକ' ଉପରେ ॥



# ଚିତ୍ରପଟ

ମୋ ଶୋଇବା ଘରର ବିବର୍ଣ୍ଣ କାନ୍ଥରେ
ଝୁଲୁଛି କେତୋଟି ଚିତ୍ରପଟ
କାହିଁ କେଉଁକାଳୁ ।

ତା'ଉପରେ କ୍ରମେକ୍ରମେ
ପରସ୍ତ ପରସ୍ତ ହୋଇ
ଜମିଯାଉଛି ଧୂଳି
ଛନ୍ଦି ଯାଉଛି ଅଳନ୍ଧୁ ।।

ତଥାପି ଚିତ୍ରପଟ ଗୁଡ଼ିକ
ଦିନପରେ ଦିନ
ବର୍ଷ ପରେ ବର୍ଷ
ବିବର୍ଣ୍ଣ କାନ୍ଥଟିରେ ଝୁଲିଝୁଲି
ଉଦାସ ଆଖିରେ
ଚାହିଁଛନ୍ତି କେବଳ;
କେତେ ନିର୍ବିକାର ସତେ
ସେମାନଙ୍କର ସେ ସ୍ଥିର ଚାହାଣି ! !

ପ୍ରତିଟି ରାତିରେ
ଶୋଇବାକୁ ଗଲେ
ମୁଁ ସେମାନଙ୍କୁ ଚାହିଁରହେ
ଅବାକ୍ ଆଖିରେ;

ଆଉ ସେମାନେ
ସେମାନଙ୍କ ପ୍ରଶ୍ନିଳ ଦୃଷ୍ଟିରେ
ମୋତେ ଯେମିତି
କିଛି କହିବାକୁ ଚେଷ୍ଟା କରନ୍ତି
କିନ୍ତୁ କହିପାରନ୍ତି ନାହିଁ ।।

ଚାହୁଁ ଚାହୁଁ
ମୋତେ ଘୋଟିଆସେ ନିଦ
ଗାଢ଼ ଗହନ ନିଦ;
ଶୋଇଶୋଇ ସ୍ୱପ୍ନଦେଖେ -
ମୁଁ ଏକ ଚିତ୍ରପଟ ହୋଇ
ଯେମିତିକି
ଝୁଲୁଚି ସେମାନଙ୍କ ସାଥିରେ ।।

•



ଦୀର୍ଘ ଛଅ ଦଶନ୍ଧି ଧରି ଅବିଶ୍ରାନ୍ତ ଲେଖନୀ ଚାଳନା ଅବ୍ୟାହତ ରଖିଥିବା ବିଦଗ୍ଧ କାବ୍ୟଶିଳ୍ପୀ ବ୍ରଜନାଥ ରଥ ଓଡ଼ିଆ ସାହିତ୍ୟ ଜଗତର ଏକ ସ୍ୱତନ୍ତ୍ର ଆସନରେ ଆସୀନ । ବିଶେଷକରି ପ୍ରଗତିଶୀଳ ଭାବ ଓ ମାନବବାଦୀ ଚିନ୍ତାଧାରାର କାବ୍ୟଶିଳ୍ପୀ ରୂପେ ସୁପରିଚିତ । ତାଙ୍କ କାବ୍ୟଭୂମି କେବେ ବ୍ୟଙ୍ଗ - ବିଦ୍ରୂପ, କେବେ ପୁଣି ସ୍ନେହ ଦରଦରେ ଭରା । 'ମରୁ ଗୋଲାପ', 'ନିଜସ୍ୱ ସଂଳାପ', 'ନିଃଶବ୍ଦ ପ୍ରତିବାଦ', 'ସଭ୍ୟତାର ମୁହଁ', 'ମନର ମାନଚିତ୍ର', 'ହେ ମହାଜୀବନ' 'ଇସ୍ପାତଚକ୍ର', 'ହେ ମୋର ସ୍ୱଦେଶ', 'ସମୟର ଶବ୍ଦଲିପି' ଆଦି କବିତା ସଂକଳନରେ ମାନବପ୍ରତି ଗଭୀର ସମବେଦନା, ବିପ୍ଳବର ଆହ୍ୱାନ ଏବଂ ପ୍ରୀତି - ପ୍ରତ୍ୟୟର ଅମୃତବାଣୀ ଝଙ୍କୃତ । ଦେଶ - ଜାତି ଓ ଜନଗଣଙ୍କ ପାଇଁ ଅତି ସମ୍ବେଦନଶୀଳ ତାଙ୍କ କବିତା । ତାଙ୍କର ରଚନାଶୈଳୀ ମଧ୍ୟ ଅନନ୍ୟ । ସେଥିରେ ନଥାଏ ଅବୋଧ୍ୟତା ବା ନିଜସ୍ୱ ମତ ଉପସ୍ଥାପନରେ କୃତ୍ରିମତା । ଜଣେ ସଜ୍ଜନ ତଥା ନୀତିନିଷ୍ଠ ସ୍ୱାଭିମାନୀ କବି ରୂପେ ସେ ସବୁରି ପ୍ରିୟ ।

ଓଡ଼ିଆ ଯୁବଲେଖକ ସମ୍ମେଳନ, ଫକୀରମୋହନ ସାହିତ୍ୟ ପରିଷଦ, ଉତ୍ତର ଓଡ଼ିଶା ସାହିତ୍ୟ-ସଂସ୍କୃତି ସମ୍ମେଳନ, ସୁବର୍ଣ୍ଣଶ୍ରୀର ସଭାପତି ଭାବେ କାର୍ଯ୍ୟ କରିଥିବାବେଳେ, କେନ୍ଦ୍ର ସାହିତ୍ୟ ଅକାଦେମୀ, ଓଡ଼ିଶା ସାହିତ୍ୟ ଏକାଡେମୀ, ଉତ୍କଳ ସାହିତ୍ୟ ସମାଜ, ଉତ୍କଳ ସମ୍ମିଳନୀ ଆଦି ବହୁ ସମ୍ମାନଜନକ ସାହିତ୍ୟ ସଂସ୍କୃତି ଅନୁଷ୍ଠାନର ସୁପରିଚାଳନାରେ ଜଡ଼ିତ ।

ଗଂଗାଧର ରଥ ଫାଉଣ୍ଡେସନ୍ ପକ୍ଷରୁ 'ସାହିତ୍ୟ ଭାରତୀ ପୁରସ୍କାର ଓ ସମ୍ମାନ', ସମ୍ବଲପୁର ବିଶ୍ୱବିଦ୍ୟାଳୟ ପକ୍ଷରୁ 'ଭାରତଚନ୍ଦ୍ର ନାୟକ ସାହିତ୍ୟ ସମ୍ମାନ', ରାଷ୍ଟ୍ରୀୟ ହିନ୍ଦୀ ଏକାଡେମୀ ପକ୍ଷରୁ 'କବି ଜୟଶଙ୍କର ପ୍ରସାଦ ସାହିତ୍ୟ ସମ୍ମାନ', ପ୍ରଜାତନ୍ତ୍ର 'ବିଷୁବ ପୁରସ୍କାର', ଭୁବନେଶ୍ୱର ପୁସ୍ତକମେଳା ପକ୍ଷରୁ 'କବି ସଚ୍ଚିରାଉତରାୟ ସାହିତ୍ୟ ସମ୍ମାନ', 'ସାରଳା ସ୍ମାରକ ସମ୍ମାନ', ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ସହକାର - ମାତୃଭୂମି ମଙ୍କର ମିଳନ ଅଭିନନ୍ଦନ, କଳାହାଣ୍ଡି ସମ୍ମାନ, କବିଶେଖର ଚିନ୍ତାମଣି ପୁରସ୍କାର, ଜଷ୍ଟିସ୍ ହରିହର ମହାପାତ୍ର ସ୍ମାରକ ପୁରସ୍କାର, ଗଂଗାଧର ମେହେର କବିତା ସମ୍ମାନ ଆଦି ଅନେକ ପୁରସ୍କାର ଓ ସମ୍ମାନରେ ସମ୍ମାନିତ ।

ଆଧୁନିକ ଓଡ଼ିଆ କାବ୍ୟ - କବିତାର ଉତ୍ତରଣ ଦିଗରେ ଯେଉଁ କେତେଜଣ ସଦାସ୍ମରଣୀୟ, ସେମାନଙ୍କ ମଧ୍ୟରେ କବି ବ୍ରଜନାଥ ରଥ ଅନ୍ୟତମ । ପାଠକୀୟ ପ୍ରଶଂସା ତାଙ୍କର ପୁଞ୍ଜି । ପଦ-ପଦବୀରୁ ସଦା ଦୂରତ୍ୱ ରକ୍ଷା କରି ଆସିଥିବା ଏହି ବରିଷ୍ଠ କବିଙ୍କର ସଦ୍ୟତମ କବିତା ସଂକଳନ

'ସାମାନ୍ୟ ଅସାମାନ୍ୟ', ଯେଉଁଥିରେ ବିନ୍ଦୁ ମଧ୍ୟରେ ସିନ୍ଧୁ ଦର୍ଶନ ଭଳି ବିଷୟ ନିହିତ । ଆମେ ଯାହାକୁ ସାମାନ୍ୟ କହି କେବେ ଗୁରୁତ୍ୱ ଦେଇନଥାଉ, କବି ଶ୍ରୀ ରଥ ସେହି ସାମାନ୍ୟ ଭିତରେ ଥିବା ଅସାମାନ୍ୟତାକୁ ଠାବ କରିବାରେ ସମର୍ଥ ହୋଇଛନ୍ତି ।

ଆମର ବିଶ୍ୱାସ ଏହି କାବ୍ୟ ସଂକଳନ ଓଡ଼ିଆ କବିତାପ୍ରେମୀଙ୍କ ହୃଦୟକୁ ଛୁଇଁବ ଓ ମନକୁ ମୋହିବ ।

ପ୍ରକାଶକ

ସୁବର୍ଣ୍ଣଶ୍ରୀ ପ୍ରକାଶିନୀ